# ଜହ୍ନମାମୁଁ

ଜାନୁଆରି ୧୯୮



## ବିଷୟ-ସୂଚୀ





ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

## "ମେଘ"

ବାଇଶ କ୍ୟାରେଟ ସ୍ୱର୍ଣ୍ଣାଚ୍ଛାଦିତ ଅଲଙ୍କାର ଜଗତରେ ବିଶ୍ୱସ୍ତ ଓ ବିଖ୍ୟାତ ନାମ ! ସଦା ଉଜ୍ଜ୍ୱଳ ଏବଂ ଅତୁଳନୀୟ ସୌନ୍ଦର୍ଯ୍ୟ ! ସବୁ ପ୍ରକାର ଉତ୍ସବ ସୁହାଇଲା ଭଳି ନାନା ବିଧି ଅଲଙ୍କାର !

ମଗାଇବା ବେଳେ ଅଙ୍କ କାରର ନମ୍ବର ଲେଖିବେ । ଭି. ପି. ଖର୍ଚ୍ଚ ଅଲଗା ।
ମାଗଣା ତାଲିକା ପାଇଁ ଲେଖନ୍ତୁ । (ଏଜେଣ୍ଟ୍ ଆବଶ୍ୟକ)































































# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

ନବବର୍ଷ ଆପଣଙ୍କ ପାଇଁ ମଙ୍ଗଳମୟ ହେଉ । ଏ ସଂଖ୍ୟାରୁ ଆରମ୍ଭ ହେଉଛି "କନକ ଉପତ୍ୟକାର କାହାଣୀ" । ମୂଢ଼ ରଜାର ଅହଂରେ ଇନ୍ଧନ ଯୋଗାଉଥିଲ ତା'ର ଗୃହକାରମାନଙ୍କ ଆଚରଣ । ଯୁଗେ ଯୁଗେ ଏହା ହୋଇ ଆସିଛି । ଏଭଳି ମୂଢ଼ମାନେ ନଜେ ହାସ୍ୟାସ୍ପଦ କାମ କରିବା ସଙ୍ଗେ ସଙ୍ଗେ ଅନ୍ୟଙ୍କୁ ବଡ଼ ହଇରାଣ କରନ୍ତି ।

<u>ଅମରବାଣୀ</u>

ଜାତସ୍ୟ ନଦୀତୀରେ ତସ୍ୟାପି, ତୃଣସ୍ୟ ଜନ୍ମ ସାଫଲ୍ୟମ୍ ।
ଯତ୍ ସଲିଲମଜ୍ଜନାକୁଲ, ଜନହସ୍ତାବଲମ୍ବନମ୍ ଭବତି ।

[ନଦୀ କୂଳରେ ବଢିଥିବା ତୃଣର ଜନ୍ମ ହିଁ ସଫଳ ହୋଇପାରେ—ଯଦି ବୁଡ଼ିଯାଉଥିବା ଲୋକଟିଏ ତାକୁ ଧରି ପକାଇ କୂଳକୁ ଉଠି ଆସିପାରେ !]

ବର୍ଷ : ୨୧ ଜାନୁଆରି ୧୯୮୮ ଅଙ୍କ : ୭

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦



# ଜମିବ ଭଲ ଗ୍‌ର ଆସର
# ଲିପ୍‌ଟନ ବିସ୍କୁଟର ନାହିଁ ପଟାନ୍ତର



## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### କା'ର ସର୍ବନାଶ, କା'ର ପୌଷମାସ

ମଧ୍ୟପ୍ରଦେଶର ଗାବଡ଼ ନାମକ ଗାଁରେ ଚଡ଼କା ପଡ଼ି ଗୋଟିଏ ଶିଶୁର ପ୍ରାଣ ଗଲା, କିନ୍ତୁ ପାଖରେ ଥିବା ଗୋଟିଏ ଆଜନ୍ମ ବଧୀର ପିଲା ଶ୍ରବଣ ଶକ୍ତି ପାଇଗଲା ।

### ଗନ୍ତାଘରିଆଙ୍କ କବର

ମିଶର (ଇଜିପ୍ଟ)ର ବିଖ୍ୟାତ ଫାରୋ ବା ସମ୍ରାଟ ତୁତାନ୍-ଖାମୁନ୍‌ଙ୍କ ବିଷୟ ନିଶ୍ଚୟ ଶୁଣିଥିବ । ତାଙ୍କ ଗନ୍ତାଘରିଆ ତଥା ପୁରୋହିତଙ୍କ ନାମ ଥିଲା ମାୟା । ମାୟା ଓ ମାୟାଙ୍କ ସ୍ତ୍ରୀଙ୍କ କବରର ସନ୍ଧାନ ଏବେ ମିଳିଛି । ହଜାର ହଜାର ବର୍ଷ ତଳର ସେ କବର ଭିତରେ ବହୁତ ଧନରତ୍ନ ଥିବାର ସମ୍ଭାବନା ।





### ଅତିଥି ବୃକ୍ଷର ଗରିମା

ଭାରତରୁ ଯାଇ ମସ୍କୋର ବୋଟାନିକ୍ୟାଲ୍ ଗାର୍ଡେନ୍‌ରେ ରୋପିତ ଗୋଟିଏ ଦେବଦାରୁ ଗଛ ସମୟ କ୍ରମେ ଶହେ ଫୁଟ ଯାଏ ବଢ଼ି ମସ୍କୋ ନଗରୀର ଉଚ୍ଚତମ ବୃକ୍ଷ ହେବାର ଗୌରବ ଅର୍ଜନ କରିବ ବୋଲି ବିଶ୍ୱାସ କରାଯାଏ ।

### ସାଇବେରିଆଠୁଁ ଭଲ ?

ଦ୍ୱିତୀୟ ମହାଯୁଦ୍ଧରେ ଲଢ଼ିଥିବା ଜଣେ ଉକ୍ରାଇନ୍‌ବାସୀ ସୈନିକ ଆଜିକୁ ୪୨ ବର୍ଷ ହେଲା ନିଜ ଘରର ଗୋଟିଏ କୋଣରେ ଲୁଚି ରହିଥିଲା । ଜର୍ମାନ୍‌ମାନେ ରୁଷ ଭିତରକୁ ପଶିଆସିବା ବେଳେ ସେ ଆତ୍ମସମର୍ପଣ କରିଥିଲା । ଜର୍ମାନୀର ପରାଜୟ ପରେ ତା'ର ଭୟ ହେଲା କି ରୁଷ ସରକାର ତାକୁ ତା'ର ଭୀରୁତା ପାଇଁ ଦଣ୍ଡ ହିସାବରେ ସାଇବେରିଆ ତୁଷାର-ମରୁକୁ ପଠାଇଦେବେ । ଏବେ ତାର ସନ୍ଧାନ ମିଳିଛି ଓ ସେ ପଦାକୁ ଆସିଛି ।



ପ୍ରାଚୀନ ସାହିତ୍ୟର ଚରିତ୍ର :

# ଜଡ଼ ଭରତ

ଏକଦା ଭରତ ନାମରେ ଜଣେ ରାଜା ଥିଲେ । ପରିଣତ ବୟସରେ ସେ ରାଜ୍ୟଭାର ପୁତ୍ରମାନଙ୍କୁ ଦେଇ ତପସ୍ୟା ନିମନ୍ତେ ବଣକୁ ଚାଲିଗଲେ ।

ଦିନେ ସେ ନଦୀରେ ସ୍ନାନ କରୁଛନ୍ତି, ଦେଖିଲେ ଗୋଟିଏ ମା ହରିଣ ତା' ଶାବକକୁ ଛାଡ଼ି ମରିଗଲା । ଭରତ ଛୁଆ ହରିଣକୁ ନିଜ କୁଡ଼ିଆକୁ ନେଇଯାଇ ପାଳିଲେ । କ୍ରମେ ସେ ହରିଣ ଛୁଆ ତାଙ୍କୁ ଏମିତି ମାୟାଡୋରିରେ ବାନ୍ଧିଲା ଯେ ସେ ଆଉ ସବୁ କଥା ଭୁଲିଯାଇ ତାହାରି ଯତ୍ନ ନେବାରେ ମନ ଦେଲେ ।

ମୃତ୍ୟୁ ସମୟରୁ ସେ ସେହି ହରିଣ କଥା ଭାବୁଥିବାରୁ ପର ଜନ୍ମରେ ହରିଣ ହୋଇ ଜନ୍ମ ନେଲେ । କିନ୍ତୁ ପୂର୍ବଜନ୍ମ କଥା ତାଙ୍କର ମନେଥାଏ । ସେ ଅନୁତାପ କରୁଥାନ୍ତି । ହରିଣ ଜୀବନ ପରେ ସେ ଗୋଟିଏ ବ୍ରାହ୍ମଣ ପରିବାରରେ ଜନ୍ମ ନେଲେ । ଦୁଇ ପୂର୍ବଜନ୍ମ କଥା ସୁମରି ସେ ସର୍ବଦା ବୀତସ୍ପୃହ ରହୁଥାନ୍ତି । ଲୋକେ ତାଙ୍କୁ ବୋକା ଭାବି ଜଡ଼ ଭରତ ବୋଲି ଡାକୁଥାନ୍ତି । ସେ ଘର ଛାଡ଼ି ଏଣେ ତେଣେ ବୁଲୁଥିବା ବେଳେ ଦିନେ ରାଜକର୍ମଚାରୀମାନେ ତାଙ୍କୁ ଧରି ନେଇ ରାଜାଙ୍କ ସବାରୀ ବହିବା କାମରେ ଲଗାଇଲେ ।

ସେ କାଳେ କୌଣସି ପ୍ରାଣୀକୁ ମାଡ଼ି ପକାଇବେ, ତେଣୁ ସାବଧାନରେ ଚାଲୁଥାନ୍ତି । ଫଳରେ ସବାରୀର ଗତିରେ ବାଧା ପଡୁଥାଏ । ରାଗିଯାଇ ରାଜା ଥରେ ତାଙ୍କୁ ଗୋଇଠାଏ ପକାଇଲେ । ବାହକ କିନ୍ତୁ ଶାନ୍ତ କଣ୍ଠରେ ରାଜାଙ୍କୁ ଶାସ୍ତ୍ର ଉପଦେଶ ଦେବାକୁ ଲାଗିଲେ । ରାଜା ବିସ୍ମୟରେ ସବାରୀରୁ ଓହ୍ଲାଇ ତାଙ୍କୁ ପ୍ରଣାମ କଲେ । ରାଜା ତାଙ୍କୁ ବହୁ ଭାବରେ ସମ୍ମାନିତ କରିବାକୁ ଚାହୁଁଥିଲେ । କିନ୍ତୁ ସେ ମୋଟେ ଅପେକ୍ଷା ନକରି ବଣକୁ ଯାଇ ତପସ୍ୟା କରି ମୁକ୍ତି ଲାଭ କଲେ ।






# ଚିକିତ୍ସା ରହସ୍ୟ

ପ୍ରାୟ ପଚିଶ ବର୍ଷ ତଳର ଗୋଟିଏ କଥା । ମଙ୍ଗଳପୁର ଗାଁରେ ଜଣେ ଜମିଦାର ଥିଲେ । ନାମ ବିଷ୍ଣୁ ଗୁପ୍ତ । ତାଙ୍କ ଜମିଦାରି ସେପରି ବିଶେଷ ବଡ଼ ନଥିଲା, ତେବେ ଜମିଦାରି ସାଙ୍ଗକୁ ତାଙ୍କର କିଛି ବ୍ୟବସାୟ ମଧ୍ୟ ଥିଲା ।

ମଙ୍ଗଳପୁର ଗାଁରେ ଜଣେ ବିଶିଷ୍ଟ ବୈଦ୍ୟ ଥିଲେ । ବିଷ୍ଣୁ ଗୁପ୍ତଙ୍କର ଦେହ ପା ଖରାପ ହେଲେ ସେ ଦେଖୁଥିଲେ । ବୈଦ୍ୟଙ୍କର ପରଲୋକ ହୋଇଯିବାରୁ ବିଷ୍ଣୁ ଗୁପ୍ତ ବହୁତ ଦୁଃଖିତ ହେଲେ ।

ଏହାପରେ ଥରେ ବିଷ୍ଣୁ ଗୁପ୍ତଙ୍କୁ ଜ୍ୱର ହେଲା । ଅଳ୍ପ ଦୂରରେ ଥିବା ଶ୍ୟାମଗଡ଼ ଗାଁର ବୈଦ୍ୟ ଜୟରାମଙ୍କୁ ଡାକ ହେଲା । ଜୟରାମ ଆନନ୍ଦରେ ଆସି ବିଷ୍ଣୁ ଗୁପ୍ତଙ୍କୁ ଦେଖିଲେ । କାରଣ ଏଡ଼େ ବିଶିଷ୍ଟ ବ୍ୟକ୍ତିଙ୍କୁ ଚିକିତ୍ସା କରିବାର ସୁଯୋଗ ତାଙ୍କୁ ପୂର୍ବରୁ କେବେ ମିଳି ନଥିଲା । ସେ ଆସି ଔଷଧ ଦେଲେ ପ୍ର ସବୁଦିନ ଆସିଲେ । ତିନି ଚାରିଦିନରେ ଗୁପ୍ ପୁରାପୁରି ସୁସ୍ଥ ହୋଇଗଲେ । ସେ ବୈଦ୍ୟଙ୍କୁ ଶହେଟଙ୍କା ଧରାଇ ଦେଲେ ।

ବାସ୍ତବିକ ବିଷ୍ଣୁଗୁପ୍ତଙ୍କର ବିଶେଷ କଷ୍ ହୋଇ ନଥିଲା । ସାମାନ୍ୟ ଜ୍ୱର । ହୁଏ ସେ ବିନା ଚିକିତ୍ସାରେହିଁ ଆପଣାଛାଏଁ ଭ ହେବାକୁ ପସନ୍ଦ କରିଥାନ୍ତେ । କିନ୍ତୁ ତା କୌଣସି ଜରୁରୀ କାମରେ ସହରକୁ ଯିବା ପଡୁଥିବାରୁ ସେ ଔଷଧ ଖାଇ ଶୀଘ୍ର ଆରୋ ହେବାକୁ ଚାହୁଁଥିଲେ । ବୈଦ୍ୟଙ୍କ ଔଷଧ ଭ କାମ କରିବାରୁ ସେ ଖୁସି ହେଲେ । ଏତେ ଗୁଡ଼ିଏ ଟଙ୍କା ଦେବାର ତାହାହିଁ ମୁଖ୍ୟ କାରଣ ତେବେ ଅନ୍ୟ କାରଣ ବି ଥିଲା । ଗୁ ଜାଣିଥିଲେ ଯେ ବୈଦ୍ୟ ଅଭାବୀ ଲୋକ ।

"ତୁ ଯାହାପାଇଁ ନସର ପସର ..."



ବୈଦ୍ୟ ଅବାକ୍ ହୋଇଗଲେ । କାରଣ ଏଭଳି ସାଧାରଣ ରୋଗର ଚିକିତ୍ସା ପାଇଁ ତାଙ୍କୁ କେହି ପାଞ୍ଚ ଦଶଟଙ୍କାରୁ ବେଶି ଦେଉ ନଥିଲେ । ସେ ଗୁପ୍ତଙ୍କୁ କି ଭାଷାରେ ଧନ୍ୟବାଦ ଦେବେ ବୁଝିପାରିଲେ ନାହିଁ । ଆନନ୍ଦରେ ଗଦ୍ ଗଦ୍ ହୋଇ ଚାଲିଗଲେ ।

ଏହାର ଦୁଇଦିନ ପରେ ସେ ଆସି ହଠାତ୍ ପହଞ୍ଚିଗଲେ ଗୁପ୍ତଙ୍କ ଘରେ । ଗୁପ୍ତ ପଚାରିଲେ, "କ'ଣ ବୈଦ୍ୟ ମହାଶୟ । ...ାମ ଶାଁ ଗସ୍ତା ଦେଇ ଆଉ କୁଆଡ଼େ ଯାଉଥିଲେ କି ?"

"ନା, ଖାସ୍ ଆପଣଙ୍କ ସହ କଥା ଅଛି ବୋଲି ଆସିଛି ।" ବୈଦ୍ୟ କହିଲେ ।

"ବେଶ୍, ବେଶ୍ । କୁହନ୍ତୁ ।" ଗୁପ୍ତ ବୈଦ୍ୟଙ୍କୁ ବସିବାକୁ ଚୌକି ଦେଖାଇ ଦେଲେ ।

ବୈଦ୍ୟ କଣ୍ଠସ୍ୱର ଧୀର କରି କହିଲେ, "ଗୋପନ କଥା ।"

ଗୁପ୍ତ ଆଶ୍ଚର୍ଯ୍ୟ ହୋଇ ବୈଦ୍ୟଙ୍କୁ ଗୋଟିଏ ଭିତର କୋଠରୀକୁ ନେଇଗଲେ । ବୈଦ୍ୟ ଥରେ ଯୋରରେ ନିଃଶ୍ୱାସ ନେଇ କହିଲେ, "ମହାଶୟ, ଆପଣଙ୍କୁ ଚିକିତ୍ସା କଲାବେଳେ ମୁଁ ହଠାତ୍ କେତୋଟି ଉପସର୍ଗ ଦେଖିଲି । ସେଥିରୁ ବୁଝିଲି ଆପଣଙ୍କ ଭିତରେ ଗୋଟିଏ ଭୀଷଣ ବେମାରି ଦେଖା ଦେଇଛି । ତାହାର ଚିକିତ୍ସା ନହେଲେ..."

"ନହେଲେ ?" ଗୁପ୍ତ ପଚାରିଲେ ।

"ଆପଣ ଛଅମାସ ପରେ ଇହଧାମ ପରିତ୍ୟାଗ କରିବେ ।" ବୈଦ୍ୟ ସଙ୍କୋଚ ଛାଡ଼ି କହିଲେ ।

"ଯଦି ସେ ରୋଗର ଚିକିତ୍ସା ଅଛି, ତେବେ ଚିକିତ୍ସା ନ ହେବା କିଆଁ ?" ଗୁପ୍ତ ପଚାରିଲେ ।

"କଥା କ'ଣ କି, ସେ ଚିକିତ୍ସା ଟିକିଏ ବ୍ୟୟସାପେକ୍ଷ । ଅର୍ଥାତ୍ ମୋତେ ବହୁତ ମୂଲ୍ୟବାନ ଔଷଧ ତିଆରି କରିବାକୁ ପଡ଼ିବ । ସୁନା ଭସ୍ମ ସେ ଔଷଧରେ ପଡ଼ିବ । ହଜାର ହଜାର ଟଙ୍କା ଖର୍ଚ୍ଚ ହେବ ।"

"କେତେ ହଜାର ?"

"ସମୁଦାୟ ପ୍ରାୟ ବାର ହଜାର ପଡ଼ିବ ।"

ଗୁପ୍ତ ମୁଣ୍ଡ ହଲାଇ କହିଲେ, "ବୈଦ୍ୟଜୀ, ମୋତେ ବୟସ ଆସି ସତୁରି ହେଲାଣି । ମୁଁ ଜୀବନରେ ଯାହା କରିବାର କରିଛି । ଏଣିକି ମୋ ପୁଅ ଜମିଦାରି ତଥା ବେପାର ବୁଝୁଛି । ମୁଁ ଭଗବତ୍ ଚିନ୍ତାରେ କିମ୍ବା ପୋଥି ପୁରାଣ ପଢ଼ି ସମୟ ବିତାଉଛି । ମୋର ଆଉ ଦୀର୍ଘ ଜୀବନ ଦରକାର କ'ଣ ? ଭଗବାନ ଯଦି ଚାହିଁବେ, ତେବେ ମୁଁ ପରଲୋକଗମନ ନ କରିବି କିଆଁ ? ନା ବୈଦ୍ୟଜୀ, ମୁଁ ବାର ହଜାର ଟଙ୍କା ଦେଇ ପାରିବି ନାହିଁ ।"

ବୈଦ୍ୟ ଗମ୍ଭୀର ହୋଇ କହିଲେ, "ଆପଣ ମୋ କଥାରେ ଗୁରୁତ୍ୱ ଦେଉ ନାହାନ୍ତି । ମୁଁ ଠିକ୍ କହୁଛି । ଚିକିତ୍ସା ନହେଲେ ଛଅ ମାସରେ ଆପଣ ଯିବେ । ସଙ୍ଗେ ସଙ୍ଗେ ଚିକିତ୍ସା ଆରମ୍ଭ ହେବା ଦରକାର ।"

"ମୋର ଚିକିତ୍ସା ଦରକାର ନାହିଁ, ବୈଦ୍ୟ ମହାଶୟ ! ଦୁନିଆରେ କେତେଜଣ ଏପରି ଦୁର୍ମୂଲ୍ୟ ଚିକିତ୍ସାର ଆଶ୍ରୟ ନେଇ ପାରିବେ ?" ଗୁପ୍ତ କହିଲେ ।

"କିନ୍ତୁ ଚିକିତ୍ସା ନହେଲେ ଆପଣଙ୍କ ବଞ୍ଚିବାର ଆଶା ନାହିଁ ଯେ !" କହିଲେ ଗୁପ୍ତ ।

"କହିଲି ପରା, ମୋର ବଞ୍ଚିବାରେ ଆଗ୍ରହ ନାହିଁ ! ତେବେ ଆପଣ ଯଦି ଚାହାନ୍ତି, ଚିକିତ୍ସା କରି ପାରନ୍ତି । ମୁଁ ବର୍ଷକ ପରେ ଟଙ୍କା ଦେବି । ବର୍ତ୍ତମାନ ମୋଠି ଟଙ୍କା ନାହିଁ ।" ଗୁପ୍ତ କହିଲେ ।



"ବର୍ଷକ ପରେ ଆପଣ ବାର ହଜା
ପାଇବେ କେଉଁଠାରୁ ?" ବୈଦ୍ୟ ପଚାରିଲେ

"ଆପଣଙ୍କ ଭଳି ଜଣେ ସାଧାରଣ ବୈଦ
ଯଦି ଛଅ ମାସରେ ବାରହଜାର ଟଙ୍କା ଆ
କରି ପାରିବେ ବୋଲି ଭାବିଲେ, ମୋ ଭ
ଜଣେ ଜଣାଶୁଣା ଜମିଦାର ଓ ବ୍ୟବସାୟ
ବର୍ଷକରେ ବାରହଜାର ଯୋଗାଡ଼ କରିପାର
ନାହିଁ ?" ଗୁପ୍ତ ହସି ହସି ପଚାରିଲେ ।

ବୈଦ୍ୟ ଅପ୍ରତିଭ ହୋଇ ଟିକିଏ ଚିନ୍ତା କ
କହିଲେ; "ଆଚ୍ଛା, ତାହାହିଁ ହେଉ ।
ଆଗାମୀ କାଲିଠୁଁ ଚିକିତ୍ସା ଆରମ୍ଭ କରୁଛି

ପରଦିନ ବୈଦ୍ୟ ଔଷଧ ଧରି
ସେଠାରେ ପହଞ୍ଚିଲେ । ଗୁପ୍ତ ତାଙ୍କୁ ଧନ୍ୟବ



ନହେଲ, ସେକଥା ବୁଝିବ କପରି ?" ଗୁପ୍ତ କହିଲେ ।
ବୈଦ୍ୟ କ'ଣ କହିବେ କହିବେ ବୋଲି କହିପାରିଲେ ନାହିଁ । ଅନେକ ସମୟ ବସିରହି ଚାଲିଗଲେ । ସେହିପରି ଆହୁରି କେତେଥର ହେଲା ।
ମାସକ ପରେ ବୈଦ୍ୟ କହିଲେ, "ଆଜ୍ଞା, ବର୍ଷେ ତ ବହୁତ ଡେରି ଅଛି । ମୋତେ କୌଣସି ମତେ ଆଠ ହଜାର ଟଙ୍କା ବର୍ତ୍ତମାନ ଦିଅନ୍ତୁ ।"
"ବୈଦ୍ୟଜୀ, ମୁଁ କ'ଣ ଦେବାର ଥିଲେ ଦିଅନ୍ତି ନାହିଁ ? ମୁଁ ଦେଇ ପାରିବି ନାହିଁ । କିନ୍ତୁ ଆପଣଙ୍କର କ'ଣ ଏପରି ବିଶେଷ ଦରକାର ?" ଗୁପ୍ତ ପଚାରିଲେ ।
"ମୋ ଝିଅକୁ ମୁଁ ଯଥେଷ୍ଟ ଯୌତୁକ ଦେଇପାରି ନଥିଲି ବୋଲି ସେ ଆଜୀବନ ଦୁଃଖ ସହୁଛି । ତା' ଆଖିର ଲୁହ ମୁଁ ସହି ଆସିଛି, କିନ୍ତୁ ବର୍ତ୍ତମାନ ତା' ଝିଅର ବାହାଘର ବୟସ ହେଲାଣି । ବରପକ୍ଷ ଆଠ ହଜାର ଟଙ୍କା ଯୌତୁକ ଚାହାନ୍ତି । ବାହାଘର ଖର୍ଚ୍ଚ ତୁଲାଇବା ଭଳି ଅର୍ଥ ମୋର ଅଛି । କିନ୍ତୁ ଯୌତୁକ ଖର୍ଚ୍ଚ ନାହିଁ ।" ବୈଦ୍ୟ କହିଲା ।
ଗୁପ୍ତ ବୈଦ୍ୟଙ୍କ ନାତୁଣୀକୁ ଜାଣିଥିଲେ । କାରଣ ସେ ଗୁପ୍ତଙ୍କ ଗାଁରେ ବୈଦ୍ୟଙ୍କର ଜଣେ ବନ୍ଧୁଙ୍କ ଘରେ ରହି ପାଠଶାଳୀରେ ପଢୁଥିଲା । ଝିଅଟିର ସ୍ୱଭାବ ଭାରି ଭଲ ।

ଦେଲେ । ପ୍ରତି ସପ୍ତାହରେ ବୈଦ୍ୟ କିଛି କିଛି ଔଷଧ ନେଇ ଆସୁଥାନ୍ତି ଓ ତାହା କପରି ସେବନ କରିବାକୁ ହେବ, ସେକଥା କହି ଦେଉଥାନ୍ତି ।
"ଆଜ୍ଞା, ଆପଣ ବର୍ତ୍ତମାନ କପରି ଅଛନ୍ତି ?" ବୈଦ୍ୟ ଦିନେ ପଚାରିଲେ ।
"ଭଲ ଅଛି । ମୋର ରୋଗ ତ ମୋତେ କିଛି ଯନ୍ତ୍ରଣା ଦେଉ ନଥିଲା, ଆପଣ ବିଚକ୍ଷଣ ବୈଦ୍ୟ ବୋଲି ଲୁଚି ରହିଥିବା ରୋଗ ଧରି ପାରିଲେ । ଚିକିତ୍ସାରେ ସେ ରୋଗ କେତେ ମାତ୍ରାରେ ଭଲ ହେଉଛି, ସେକଥା ସିନା ଆପଣ ବୁଝିପାରିବେ ! ମୁଁ ତ ରୋଗଟି ଅନୁଭବ କରୁନଥିଲି, କେତେଦୂର ତାହା ଭଲ ହେଲା

ଗୁପ୍ତ କହିଲେ, "ବୈଦ୍ୟଜୀ, ଯୌତୁକ ପ୍ରଥାକୁ ମୁଁ ଘୃଣା କରେଁ । ମୋର ଟଙ୍କା ଥିଲେ ବି ସେଥିରେ ଖର୍ଚ୍ଚ କରିବା ନିମନ୍ତେ ମୁଁ ଆପଣଙ୍କୁ ଦେଇ ନଥାନ୍ତି ।" ଗୁପ୍ତ କହିଲେ ।

"କିନ୍ତୁ ମୁଁ କରିବି କ'ଣ ? ମୋ ନାତୁଣୀର ବାହାଘର..."

"ଶୁଣନ୍ତୁ । ଆପଣ ମୋ ସିରସ୍ତାରେ ଥିବା ସୁଧୀରକୁ ଜାଣନ୍ତି ?" ଗୁପ୍ତ ପଚାରିଲେ ।

"ହଁ ଆଜ୍ଞା । ଆପଣଙ୍କ ଦେହ ଖରାପ ହେବା ବେଳେ ମୋତେ ତ ସେ ଡାକିବାକୁ ଯାଇଥିଲେ ।"

"ବେଶ୍ । ସେ ଅତି ସତ୍ ସ୍ୱଭାବର ଯୁବକ । ଆପଣ ତାକୁ ଜୁଆଇଁ କରନ୍ତୁ । ମୁଁ ବ୍ୟବସ୍ଥା କରିଦେବି । ସୁଧୀର ଆମ ଘରେ ମଣିଷ ହୋଇଛି । ସେ ଯୌତୁକକୁ ମୋହରି ଭଳି ଘୃଣା କରୁଥିବ ବୋଲି ମୋର ବିଶ୍ୱାସ ।" ଗୁପ୍ତ କହିଲେ ।

ବୈଦ୍ୟଙ୍କ ଆନନ୍ଦ କହିଲେ ନ ସରେ । ଯଥା ସମୟରେ ବାହାଘର ହୋଇଗଲା ।

ଏଣେ ଗୁପ୍ତଙ୍କ ଚିକିତ୍ସା ଚାଲିଥାଏ । ଛଅମାସ ପୂରା ହେବାକୁ ମାସେ ଅଛି, ବୈଦ୍ୟ ଆସି ଦିନେ କହିଲେ, "ମହାଶୟ, ମୋତେ ଚାରିହଜାର ଟଙ୍କା ଦିଅନ୍ତୁ ।"

"କାହିଁକି ?" ଗୁପ୍ତ ପଚାରିଲେ ।

"ମୋ ପୁଅ ସହରରେ ଯେଉଁ ପ୍ରତିଷ୍ଠାନରେ ଚାକିରି କରୁଥିଲା, ସେ ପ୍ରତିଷ୍ଠାନ ବନ୍ଦ



ହୋଇଯାଇଛି ପାଖି ଛଅମାସ ହେବ । ଏତେ-ଦିନ ହେଲା ସେ ଘରେ ବସି ରହିଛି । ତାକୁ ଗୋଟିଏ ବେପାର କରାଇଦେବି । ଚାରିହଜାର ଟଙ୍କା ମୂଳଧନ ଲୋଡ଼ା ।"

ଜମିଦାର ଭବ କହିଲେ, "ଶୁଣନ୍ତୁ । ମୁଁ ଚାହେଁ ସୁଧୀର ନିଜ ଗୋଡ଼ରେ ଠିଆ ହେଉ ସେ ଧାନ ବେପାର କରିବ । ମୁଁ ସବୁ ଠି କରିଦେଇଛି । ମୂଳଧନ ତା'ର । କିନ୍ତୁ ଆ ଜଣେ ଅଂଶୀଦାର ଦରକାର । ସେ ଅଂଶୀଦା ମୂଳଧନ ଖଟାଇବ ନାହିଁ, ଖାଲି କାମରେ ସହଯୋଗ ଦେବ । ଆପଣଙ୍କ ପୁଅ ସେ ଭଳି ଅଂଶୀଦାର ହେଉ ଓ ସୁଧୀର ସ ବେପାର କରୁ ।"



ବୈଦ୍ୟ ଖୁସି ହେଲେ। କାରଣ ବିଷ୍ଣୁ ଗୁପ୍ତଙ୍କ ତତ୍ତ୍ୱାବଧାନରେ ତାଙ୍କ ପୁଅ ବେପାର କରିବ, ଏହାଠୁଁ ବଳି ନିରାପଦ କଥା କ'ଣ ହୋଇପାରେ?

ଗୁପ୍ତ ତାଙ୍କୁ କହୁଥାନ୍ତି, "ବୈଦ୍ୟ ମହାଶୟ, ଆପଣ ମନଦେଇ ଲୋକଙ୍କ ଚିକିତ୍ସା କରନ୍ତୁ। ଆପଣଙ୍କ ଯଶ ଖ୍ୟାତି ବଢୁ। ସେଥିରେ ଆପଣଙ୍କର ଆୟ ବି ଖୁବ୍ ଭଲ ହେବ। କିନ୍ତୁ ଆପଣଙ୍କ ଆୟ ଅପେକ୍ଷା ବଡ଼ ହେଲା ଲୋକଙ୍କର ଉପକାର। ଯଦି ଆପଣଙ୍କ ନିଷ୍ଠାର ଅଭାବ ଯୋଗୁଁ ରୋଗୀର ଅନିଷ୍ଟ ହେବ, ତେବେ ବିଧି ଆପଣଙ୍କୁ କୌଣସି ମତେ କ୍ଷମା କରିବ ନାହିଁ।"

ବୈଦ୍ୟ ଏକଥା ଶୁଣି ନିଷ୍ଠାପର ଭାବରେ ଚିକିତ୍ସା କରିବେ ବୋଲି ପ୍ରତିଶ୍ରୁତି ଦେଉଥାନ୍ତି।

ଏହା ଭିତରେ ପ୍ରଚାର ହୋଇ ଯାଇଥିଲା କି ବୈଦ୍ୟ ଗୁପ୍ତଙ୍କ ବିଶେଷ ବିଶ୍ୱାସଭାଜନ ବ୍ୟକ୍ତି। ତାଙ୍କ ଚିକିତ୍ସା ବ୍ୟବସାୟ ବହୁତ ବଢ଼ି ଯାଇଥିଲା। ଯାହାଙ୍କୁ ଗୁପ୍ତଙ୍କ ଭଳି ମାନ୍ୟଗଣ୍ୟ ବ୍ୟକ୍ତି ଏତେ ବିଶ୍ୱାସ କରନ୍ତି, ସେ ଅତି ନିର୍ଭର ଯୋଗ୍ୟ ବୈଦ୍ୟ ହୋଇଥିବେ ନିଶ୍ଚୟ—ଏହାହିଁ ହେଲା ଲୋକଙ୍କ ଧାରଣା। ସେ ବହୁତ ଅଧିକ ଆୟ କରିବାକୁ ଲାଗିଲେ।

ଦିନେ ଗୁପ୍ତ ବୈଦ୍ୟଙ୍କୁ ଏକାନ୍ତରେ କହିଲେ, "ବୈଦ୍ୟଜୀ, ଆପଣଙ୍କୁ ଗୋଟିଏ କଥା କହିବାର ଅଛି। କିନ୍ତୁ ଆପଣ ମୋତେ ଭୁଲ ବୁଝିବେ ନାହିଁ ତ?"

"ନା, ନା, ଆପଣଙ୍କ ଭଳି ଶୁଭେଚ୍ଛୁ ମୋର ଆଉ କେହି ନାହାନ୍ତି। ଆପଣ ଯାହା କହିଲେ ବି ମୁଁ ଆପଣଙ୍କୁ ଭୁଲ ବୁଝିବି ନାହିଁ। ଆପଣ ନିଶ୍ଚିନ୍ତ ଭାବରେ ମୋତେ ଯାହା କହିବାର କୁହନ୍ତୁ।" ବୈଦ୍ୟ କହିଲେ।

"ବେଶ୍। ଶୁଣନ୍ତୁ। ମୋ କଥା ଭିନ୍ନ। ମୁଁ ବୃଦ୍ଧ। ଭଗବାନଙ୍କ କୃପାରୁ ମୋର ତାଙ୍କ ଉପରେ ବିଶ୍ୱାସ ଅଛି। ଅର୍ଥାତ୍ ମୁଁ ବିଶ୍ୱାସ କରେଁ ଯେ ଜୀବନ ମୃତ୍ୟୁ ତାଙ୍କ ହାତର କଥା। ତେଣୁ ଆପଣ ମୋର ମୃତ୍ୟୁ ବିଷୟରେ ଭବିଷ୍ୟତବାଣୀ କଲେ ମଧ୍ୟ ମୁଁ ସେଥିରେ ବିଚଳିତ ହୋଇ ନାହିଁ। କିନ୍ତୁ ମୋର

ଅନୁରୋଧ ହେଲା, ଅନ୍ୟ କୌଣସି ରୋଗୀକୁ ସେଭଳି କଥା କହିବା ପୂର୍ବରୁ ଆପଣ ବହୁତ ଚିନ୍ତା କରି କହିବେ । ସେ ରୋଗୀ ଆପଣଙ୍କ ଭବିଷ୍ୟତବାଣୀ କିପରି ଭାବରେ ଗ୍ରହଣ କରିବ, ସେକଥା ବିଚାର କରିବେ । ଏପରି ହୋଇ-ପାରେ, ଆପଣଙ୍କ ଭବିଷ୍ୟତବାଣୀ ଯୋଗୁଁ ରୋଗୀ ଭୟଭୀତ ହେବ ଓ ସେଥିରେ ତା'ର ମୃତ୍ୟୁ ନିକଟତର ହେବ । ମୁଁ କିଛି ଅନ୍ୟାୟ କଥା କହୁନାହିଁ ତ? ଆପଣ କିଛି ଖରାପ ଭାବୁ ନାହାନ୍ତି ତ?"

"ନା, ନା, ମୋଟେ ନୁହେଁ । ଆପଣ ଯାହା କହିଲେ, ତାହା ଖୁବ୍ ସତ କଥା । ମୁଁ ଆପଣଙ୍କୁ ସେକଥା କହିବା ପରେ ଅନୁତାପ କରୁଛି । ଆଉ କାହାକୁ ସେପରି କହିବାର ପ୍ରଶ୍ନ ନାହିଁ ।" ବୈଦ୍ୟ କହିଲେ ।

"ବେଶ୍, ଭଲ କଥା । ଖୁସି ହେଲି । ମୋତେ କହି ଅବଶ୍ୟ କିଛି ଅନ୍ୟାୟ କରି ନାହାନ୍ତି । ମୁଁ ତ ଆପଣଙ୍କ ଚିକିତ୍ସାରେ ଭଲ ଅଛି । ମନେହୁଏ, ମୃତ୍ୟୁ କବଳରୁ ବଞ୍ଚିଯିବି ।" ଗୁପ୍ତ କହିଲେ ।

ବୈଦ୍ୟ କହିଲେ, "ଭଗବାନ ଆପଣଙ୍କୁ ଦୀର୍ଘଜୀବନ ଦେବେ । ମୋର ପ୍ରାର୍ଥନା ।"

କ୍ରମେ ଏକ ବର୍ଷ ବିତିଗଲା । ଦିନେ ଗୁପ୍ତ ବୈଦ୍ୟଙ୍କୁ ଡାକି କହିଲେ, "ବୈଦ୍ୟଜୀ, ଆପଣଙ୍କୁ ବାରହଜାର ଟଙ୍କା ଦେବାର କଥା । କିନ୍ତୁ..."



"ସେକଥା ଥାଉ । ଆଉ ଦିନେ ସେ ବିଷୟରେ ଆଲୋଚନା କରିବା ।" ଏହା କହି ବୈଦ୍ୟ ଗୁପ୍ତଙ୍କୁ ସେକଥା କହିବାକୁ ଦେଲେ ନାହିଁ । କେଇଦିନ ପରେ ଗୁପ୍ତ ପୁଣି ସେକଥା ପକାଇବାରୁ ବୈଦ୍ୟ ପୁଣି କୌଣସି ମତେ ସେକଥା ଏଡ଼ାଇଗଲେ । ଏହାପରେ ମଧ କେତେଥର ଏପରି ହେଲା । ଦିନେ ଗୁପ କିନ୍ତୁ ତାଙ୍କୁ ପାଖରେ ବସାଇ କହିଲେ "ଶୁଣନ୍ତୁ । କଥାଟା ଛିଡ଼ିଯାଉ । ନହେଲେ ମୋ ମନରେ ଗ୍ଲାନି ରହିଥିବ । ମୁଁ କାହାଁ ଋଣୀ ହୋଇ ରହିଥିବି । ଶୁଣନ୍ତୁ, ଆମ ସର୍ତ୍ତ ଅନୁସାରେ ମୁଁ ଆପଣଙ୍କୁ ବାରହଜା ଟଙ୍କା ଦେବା କଥା । ମନେ ଅଛିଟି? ଆ

ବସନ୍ତୁ । ସେ ବିଷୟରେ ଗୋଟାଏ କିଛି ବ୍ୟବସ୍ଥା କରିବା । ବୋଗଛଡ଼ା ବି ତ ମୁଁ ବୟସ ଯୋଗୁଁ ପୁଣି ଯେ କୌଣସି ସମୟରେ ମରିଯାଇ ପାରେଁ! ମୋ ଆତ୍ମା ଶାନ୍ତିରେ ରହିପାରିବ କି? ଆପଣଙ୍କ ପ୍ରାପ୍ୟ ବିଷୟରେ ସେ ସର୍ବଦା ଚିନ୍ତା କରୁଥିବ । ନୁହେଁ କି?

ବୈଦ୍ୟ ତାଙ୍କ ହାତ ଧରି ପକାଇ କହିଲେ, "ମହାଶୟ, ଆପଣଙ୍କ ପାଖରେ କିପରି ଭାବରେ କ୍ଷମା ପ୍ରାର୍ଥନା କରିବି, ତାହା ମୁଁ ଜାଣିପାରୁ ନାହିଁ । ଆପଣ ମୋର ସବୁ ସମସ୍ୟାର ସମାଧାନ କରି ଦେଇଛନ୍ତି । ମୋ ଚିକିତ୍ସାର ପ୍ରସାର ବି ହୋଇଛି ଆପଣଙ୍କ ଯୋଗୁଁ । କିନ୍ତୁ ମୁଁ ମିଥ୍ୟାବାଦୀ । ଆପଣଙ୍କୁ ଶୋଷଣ କରିବାକୁ ଚାହୁଁଥିଲି । ଆପଣ ସରଳ ଲୋକ ବୋଲି…" ବୈଦ୍ୟ ଆଉ କଥା କହି ନପାରି କାନ୍ଦି ପକାଇଲେ ।

"ବୈଦ୍ୟଜୀ, ଆପଣ ମୋତେ ଯେତେ ସରଳ ଭାବୁଛନ୍ତି, ମୁଁ ସେତେ ସରଳ ନୁହେଁ । ମୁଁ ମୂଳରୁ ଜାଣିଥିଲି, ଆପଣ ଅଭାବରେ ପଡ଼ି ମୋଠୁଁ ବାରହଜାର ଟଙ୍କା ଆଦାୟ କରିବାକୁ ଚାହାନ୍ତି । ସ୍ୱର୍ଣ୍ଣଭସ୍ମ ଇତ୍ୟାଦି ଦ୍ୱାରା ଔଷଧ ପ୍ରସ୍ତୁତ କରିବା ପାଇଁ ଯେଉଁ ହଜାର ହଜାର ଟଙ୍କା ଦରକାର, ତାହା ଆପଣ କେଉଁଠୁ ପାଆନ୍ତେ ଯେ ଆପଣଙ୍କ ଔଷଧରେ ମୁଁ ବିଶ୍ୱାସ କରନ୍ତି?" ଗୁପ୍ତ କହିଲେ ।

"ଆପଣ କ'ଣ ତେବେ…"

ଗୁପ୍ତ ହସିଲେ ଓ ଆଲ୍‌ମିରା ଖୋଲିଦେଲେ । ବୈଦ୍ୟ ଦେଇଥିବା ସବୁ ଔଷଧ ସେମିତି ରହିଥିଲା ।

"ବୈଦ୍ୟଜୀ! ଯାହା ହେବାର ହେଲାଣି । ଆପଣ ଯେ ଆଜି ମୋଠିଁ ସତ୍ୟ ପ୍ରକାଶ କରିବା ପାଇଁ ପ୍ରସ୍ତୁତ ଥିଲେ, ତାହାହିଁ ମୋର ସବୁଠାରୁ ବଡ଼ ପୁରସ୍କାର ।" ଗୁପ୍ତ କହିଲେ ।

"ମୁଁ ଆପଣଙ୍କ ଚିକିତ୍ସା କରିବି କ'ଣ ଆପଣହିଁ ମୋର ଚିକିତ୍ସା କରିଛନ୍ତି!" ବୈଦ୍ୟ ଆଖି ପୋଛି କହିଲେ ।





# କନକ ଉପତ୍ୟକାର କାହାଣୀ

ବହୁ-ବହୁ କାଳ ତଳେ ଥିଲା ଏକ ରାଜ୍ୟ । ନାମ ତା'ର କନକ ଉପତ୍ୟକା । ତାକୁ ବେଢ଼ି ରହିଥିଲା ପ୍ରସ୍ତ ପ୍ରସ୍ତ ଉଚ୍ଚରୁ ଉଚ୍ଚତର ପର୍ବତ । ପର୍ବତମାଳକୁ ଆବୋରି ରହିଥିଲା ଘନ ଅରଣ୍ୟ । ଉଚ୍ଚତମ ପର୍ବତ ଶିଖରରେ ଥିବା ଶଙ୍ଖଲତାମାନେ ସତେ ଅବା ମେଘମାଳଙ୍କ ବୁକୁରେ ଖେଳ୍ ହା ଶିଶୁଙ୍କ ଭଳି ମୁଣ୍ଡ ଗୁଞ୍ଜି ନିଦରେ ଶୋଇ ରହୁଥିଲେ !

ମେଘମାନେ ସତରେ ସେ ଉପତ୍ୟକାକୁ ଭଲ ପାଉଥିଲେ । ସେମାନଙ୍କ ଆଗମନରେ ମୟୂରମାନେ ଅକ୍ଳାନ୍ତ ନାଚୁଥିଲେ । ବର୍ଷା ହେଲେ ପର୍ବତମାଳା ଭିତରେ ଝରଣାମାନ କିଏ ବା ରୁପେଲି ଫିତା ଭଳି ତ କିଏ ବା ସିଂହର ସୁନେଲି କେଶରାଶି ଭଳି ଝରି ଆସୁଥିଲେ ଘନ ଘନ ମେଘଡମ୍ବରୁ ସହ ତାଳଦେଇ ।

ଲୋକେ ସୁଖରେ ଥିଲେ । ଖାଲି ଯେଉଁ- ମାନେ ହିଂସ୍ର ଶୀକାରୀ ଭଳି ସୁଖ ପଛରେ ଦୌଡୁଥିଲେ, ସେହିମାନଙ୍କ ମୁହଁରେ ସୁଖ ଆଭାସ ନଥିଲା । ସେମାନେ ହେଲେ ରାଜା ତାଙ୍କ ଅମାତ୍ୟବର୍ଗ ।

ପ୍ରଜାଙ୍କ ସୁଖ ସୁବିଧା ଲାଗି 'ବଞ୍ଚ ମଣ୍ଡଳ ନାମ ଦେଇ ରାଜା ଗୋଟିଏ ସମିତି କରିଥିଲେ ପ୍ରଥମ ବୈଠକରେହିଁ ସଦସ୍ୟମାନେ ଯେ ସର୍ବସମ୍ମତ ପ୍ରସ୍ତାବଟି ଗ୍ରହଣ କଲେ, ତାହାହେଲ "ରାଜାଙ୍କ ସୁଖରେ ପ୍ରଜାଙ୍କ ସୁଖ" । ରା ମୁଗ୍‌ଧ ହେଲେ ଓ 'ବଞ୍ଚ ମଣ୍ଡଳ'ର ନା ବଦଳାଇ ରଖିଲେ 'ଅତିବଞ୍ଚ ମଣ୍ଡଳ'

ମନୋଜ ଦାସ



ିତୀୟ ବୈଠକରେ ତତ୍ତ୍ୱଜ୍ଞମାନେ ସ୍ଥିର ଲେ କି ରାଜାଙ୍କ ସୁଖ ପାଇଁ ନିତ୍ୟ ନୂତନ ୟବସ୍ଥା ହେବା ଗୃହ୍ୟ । ସେ ଦିଗରେ ଏକ ଭିନବ ପଦକ୍ଷେପ ରୂପେ ଦରବାରୀ ଗାୟକ-ାନଙ୍କୁ ଶୀର୍ଷାସନ କରୁଥିବା ଅବସ୍ଥାରେ ଗୀତ ାଇବାର ନିର୍ଦ୍ଦେଶ ଦିଆଗଲା । ଫଳ ଭଲ ଲା । ରାଜା ହସିଲେ ।

ଉପତ୍ୟକାର ଅଧିବାସୀମାନେ ଥରେ ଥରେ ନବର ପଶ୍ଚାତରେ ଥିବା ପର୍ବତମାଳ ଡ଼େ ଦୃଷ୍ଟିପାତ କରି ଦୀର୍ଘନିଃଶ୍ୱାସ ାଉଥାନ୍ତି । ପିତା ପିତାମହଙ୍କଠୁଁ ସେମାନେ ିଥାନ୍ତି ଏକ କିମ୍ବଦନ୍ତୀ । ଏକଦା ସେ ୟର ତରୁଣ ରାଜା ସ୍ୱୟଂ ଥିଲେ ଜଣେ ଶିଳ୍ପୀ ତଥା ସାଧକ । ଅରଣ୍ୟମୟ ପର୍ବତମାଳା ଭିତରେ ଧ୍ୟାନସ୍ଥ ଥାଇ ସେ ଥରେ ଜାଣିବାକୁ ପାଇଥିଲେ କି ତହିଁ ଭିତରେ ଲୁଚି ରହିଛି ଏକ ସୁନାର ପାହାଡ଼ । ସେ କିଛି ସୁନା ଆଣି ଗୋଟିଏ ସୁନ୍ଦର ପ୍ରତିମା ଗଢ଼ିଥିଲେ । ତାକୁ ଦେଖିଥିଲେ ଅଳ୍ପ କେତେଜଣ । ସେମାନେ କହୁଥିଲେ, ସେ ନାରୀ ମୂର୍ତ୍ତିର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ, ଅତୁଳନୀୟ ।

ତରୁଣ ଶିଳ୍ପୀ-ରାଜା ସେ ମୂର୍ତ୍ତିକୁ ଜନସାଧାରଣଙ୍କ ଆଗରେ ଉଦ୍‌ଘାଟନ କରିବା ନିମନ୍ତେ ଏକ ଶୁଭ ପ୍ରଭାତ ନିର୍ଣ୍ଣୟ କରିଥିଲେ । କିନ୍ତୁ ହାୟ, ସେତେବେଳକୁ ତାଙ୍କ କନକ ଉପତ୍ୟକାର ସୁଖମୟ ଜୀବନ ଉପରେ ଯବନିକା ନଇଁ ଆସୁଥିଲା । ସିଂହାସନ ତଥା ସୁନା ପାହାଡ଼ ପାଇଁ ଲୋଭାତୁର ହୋଇ ତାଙ୍କ ମନ୍ତ୍ରୀ ପ୍ରତିବେଶୀ ରାଜା ସହ ଷଡ଼ଯନ୍ତ୍ର କରି ନିଶାର୍ଦ୍ଧରେ ହଠାତ୍ ନୀରବ ନବର ଉପରେ ଚଡ଼ାଉ କଲା ।

ସେ ଅନ୍ଧକାର ରାତିରେ ନବର ରକ୍ଷୀମାନେ ପ୍ରାଣପଣେ ଲଢ଼େଇ କଲେ, କିନ୍ତୁ ସେତିକିବେଳେ ଘଟିଲା ଏକ ଅଘଟଣ : ହେଲା ଭୂମିକମ୍ପ । ବିଶାଳ ଶିଳାଖଣ୍ଡମାନ ଛିଟିକି ଆସି ଦୁର୍ଗ ଧ୍ୱସ୍ତ ବିଧ୍ୱସ୍ତ କରିଦେଲା । ଦୁଷ୍ଟ ମନ୍ତ୍ରୀ ସମେତ ଆକ୍ରମଣକାରୀମାନେ ଲଭିଲେ ଜୀବନ୍ତ ସମାଧି । କିନ୍ତୁ ଶିଳ୍ପୀ-ରାଜା କୁଆଡ଼େ ଗଲେ, କେହି କହିପାରିଲେ ନାହିଁ । ତାଙ୍କ ନିର୍ମିତ 'ସୁବର୍ଣ୍ଣ ପ୍ରତିମା ବି କୁଆଡ଼େ ଲୁଚିଗଲା ।

ଏହାର କେତେକ ବର୍ଷ ପରେ କେହି କେହି କେବେ କେବେ ଅରଣ୍ୟ ଭିତରେ ଜଣେ ତପସ୍ୱୀଙ୍କୁ ଦେଖୁଥାନ୍ତି । ତାଙ୍କ ସହ ସେ ଶିଳ୍ପୀ-ରାଜାଙ୍କର ଲୁଆଡ଼େ ବହୁତ ସାମଞ୍ଜସ୍ୟ ଥିଲା । କିନ୍ତୁ ସେ ବାଗରେ କେହି ବିଶେଷ ଅନୁସନ୍ଧାନ କରି ନଥିଲେ ।

ଅନେକେ କିନ୍ତୁ ଧରିନେଇଥିଲେ କି ଶିଳ୍ପୀ-ରାଜା ଦୁର୍ଗ ପଶ୍ଚାତରେ ଥିବା ରହସ୍ୟ-ମୟ ଜଳପ୍ରପାତ ଅତିକ୍ରମ କରି ଚାଲି ଯାଇଛନ୍ତି । ସେ ଜଳପ୍ରପାତ ସେପଟେ ଥିଲା ଏକ ଅନ୍ଧକାର ଗିରି-ସଙ୍କଟ । ଥରେ ସେ ପ୍ରପାତ ଅତିକ୍ରମ କଲେ ମଣିଷ ଆଉ ଲେଉଟି ଆସିପାରେ ନାହିଁ, ଏହାହିଁ ଥିଲା ଲୋକଙ୍କର ବିଶ୍ୱାସ ।

ସେ ଯାହାହେଉ, କନକ ଉପତ୍ୟକାକୁ କବଳିତ କରିନେଲେ ସେ ଦୁଷ୍ଟ ମନ୍ତ୍ରୀର ସହାୟକ ପଡ଼ୋଶୀ ରାଜା । ସୁନାପାହାଡ଼ର ସନ୍ଧାନ ପାଇବା ଲୋଭରେ ତଥା ଉପତ୍ୟକାର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ସେ ରାଜା ନିଜ ରାଜ୍ୟର ସିଂହାସନ ପୁଅକୁ ସମର୍ପି ଏଠାକୁ ଚାଲି ଆସିଲେ । ପୂର୍ବ ରାଜବଂଶ ଅମଳରେ ରାଜା ଓ ପ୍ରଜା ବନ୍ଧା ହେଉଥିଲେ ଶ୍ରଦ୍ଧାର ଡୋରିରେ । ନୂଆ ରାଜବଂଶ ଅମଳରେ ଉଭୟଙ୍କ ସମ୍ପର୍କ ହେଲା ଭିନ୍ନ । ରାଜା ହେଲେ ସନ୍ଦେହୀ ଓ ଉଦ୍ଧତ; ପ୍ରଜାଏଁ ହେଲେ ଭୀତ ଓ ସନ୍ତ୍ରସ୍ତ ।



ପର୍ବତର ପାଦଦେଶରେ ଗଢ଼ାହେଲା ନୂ ରାଜବଂଶର ନଗର; ପର୍ବତର ମଧ୍ୟଦେଶରେ ବିରାଜିତ ପୂର୍ବ ରାଜବଂଶର ନଗରର ଧ୍ୱଂସାବ ଶେଷ କ୍ରମେ ଗଛଲତା ଆଢୁଆଳରେ ଉପତ୍ୟକାବାସୀଙ୍କ ଦୃଷ୍ଟିରୁ ଲିଭିଗଲା ।

ପୁରୁଖା ଲୋକେ କହୁଥାନ୍ତି, ଦିନ ଆସି ଯେତେବେଳେ ସେ ସୁବର୍ଣ୍ଣ-ପ୍ରତିମା ପୁଣି ଦେ ଦେବ; ସେତିକି ନୁହେଁ, ସେଥିରେ ହେ ଜୀବନ୍ୟାସ । ଉପତ୍ୟକାରେ ହେବ ନୂ ଯୁଗର ସୂତ୍ରପାତ ।

ଲୋକେ ସେ ଧ୍ୱଂସାବଶେଷ ଆଡ଼େ ଯିବ ଡରୁଥାନ୍ତି । ତାହା ଏକ ପ୍ରେତପୁରୀରେ ପରି ହୋଇଛି ବୋଲି ସେମାନଙ୍କର ଧାର



ହୋଇଥାଏ । ତା'ଛଡ଼ା ସେ ଅରଣ୍ୟମୟ
ଞ୍ଚଳରେ ବାଘ ଭାଲୁ ଓ ବିଷଧର ସର୍ପଙ୍କର
ାଭାବ ନଥାଏ ।

କିନ୍ତୁ ରାଜୁ କଥା ଅଲଗା । ସେ ଧ୍ୱଂସାବ-
ଶେଷ ପ୍ରତି ତା'ର ଥାଏ ପ୍ରବଳ ଆକର୍ଷଣ ।
ସ ଏକାକୀ ସେଠାରେ ଯାଇ ଦୀର୍ଘ ସମୟ
ରି ବିଚରଣ କରୁଥାଏ । ଦିନେ ହୁଏତ
 ପଡ଼ିଥାନ୍ତା ବାଘ କବଳରେ; କିନ୍ତୁ
ଠିକ୍ ସମୟରେ ସେ ଗୁଂଫା ଭିତରେ, ଲୁଚି
ଇ ପାରିଥିଲା । ଦିନେ ହୁଏତ ବିଷଧର
ଟିଏ ଚୋଟ ମାରିଥାନ୍ତା; କିନ୍ତୁ ଠିକ୍
ୟରେ ସେ ତା' ପାଦଟି ଅପସାରଣ
 ନେଇଥିଲା !

ରାଜୁ ପିଲାବେଳେ ମା'କୁ ହରାଇଥିଲା; ଆଉ ତା' ବାପା ଥିଲେ ଜଣେ ଦକ୍ଷ ସ୍ଥପତି । ସେ ସର୍ବଦା ନିଜ କାମରେ ବ୍ୟସ୍ତ ଥା'ନ୍ତି ।

ସେଦିନ ସୂର୍ଯ୍ୟାସ୍ତ ସମୟରେ ସବୁ କିଛିର ଅସ୍ୱାଭାବିକ ଭାବରେ ସ୍ତବ୍ଧ ଲାଗୁଥାଏ । ଆକାଶ ଦିଶୁଥାଏ ଘନ ଗେରୁଆ ଓ ବିଷାଦପୂର୍ଣ୍ଣ । ସାରା ଉପତ୍ୟକାରୁ ସବୁ ପବନ ଯେପରି କେହି ଶୋଷି ନେଇ ଯାଇଥିଲା ! ଲୋକେ ଅସ୍ୱସ୍ତି ଅନୁଭବ କରୁଥିଲେ ।

ହଠାତ୍ ଅରଣ୍ୟର ସହସ୍ର ପଶୁପକ୍ଷୀ ରଡ଼ି ଆରମ୍ଭ କରିଦେଲେ । ତା'ପରେ ଆସିଲା ପ୍ରଚଣ୍ଡ ଉତ୍ତପ୍ତ ପବନ । କ୍ଷେତବାଡ଼ି ପଥ-ଘାଟରେ ଲୋକେ ସନ୍ତ୍ରସ୍ତ ଭାବରେ ଦୌଡ଼ିବାକୁ ଲାଗିଲେ । ପର୍ବତମାଳା ଭିତରୁ ଶୁଭିଲା କର୍ଣ୍ଣ-ବିଦାରକ ଶବ୍ଦ । ପରେ ପରେ ଘରଦ୍ୱାର ଦୋହଲିବାକୁ ଲାଗିଲେ । ଅବଶ୍ୟ ସେ ଭୂମିକମ୍ପ ବେଶୀକ୍ଷଣ ସ୍ଥାୟୀ ହେଲା ନାହିଁ କି ବିଶେଷ ଅନିଷ୍ଟ କଲା ନାହିଁ, କିନ୍ତୁ ପର୍ବତର ମଧ୍ୟଭାଗରୁ ପରିତ୍ୟକ୍ତ ପୁରୁଣା ପ୍ରାସାଦର ଏକ ଅଂଶ ଛୁଟିକି ଆସି ନୂଆ ପ୍ରାସାଦର ଶିଖର ଭାଙ୍ଗି ଦେଲା ।

ରାଜା ସଙ୍ଗେ ସଙ୍ଗେ ଅତିଜରୁରୀ ମନ୍ତ୍ରୀମଣ୍ଡଳର ବୈଠକ ଡକାଇଲେ । "ଯଦି ପ୍ରାସାଦର ଶିଖର ଭୂତଳଶାୟୀ ହେଲା, ତେବେ ତାକୁ ନିର୍ମାଣ କରିଥିବା ମିସ୍ତ୍ରୀମାନଙ୍କ ମୁଣ୍ଡ ମଧ୍ୟ ଭୂତଳଶାୟୀ ହେବା ଦରକାର !" ସେ ଗର୍ଜନ କରି କହିଲେ ଓ ପଚାରିଲେ, "ଠିକ୍ ନୁହେଁ ?"

"ହେ ରାଜକୂଳ-ଶାର୍ଦ୍ଦୂଳ, ସେମାନେ ଦୁଇପୁରୁଷ ତଳର ମିସ୍ତ୍ରୀ!" ମନ୍ତ୍ରୀ କ୍ଷମାପ୍ରାର୍ଥୀ ଭଳି କହିଲେ ।

"ହଇହେ ମନ୍ତ୍ରୀ! ଆମ୍ଭେ ବୋକା?" ରାଜା ଗମ୍ଭୀର ହୋଇ ପ୍ରଶ୍ନ କଲେ ।

"ମହାରାଜ, ଆପଣ ଅତିଜ୍ଞାନୀ ମଣ୍ଡଳର ସ୍ରଷ୍ଟା । ଆପଣ ତେଣୁ ଅତି-ଅତି ଜ୍ଞାନୀ । ଆମ ସମସ୍ତିଙ୍କ ଜ୍ଞାନର ପରିମାଣ ଉଇହୁଙ୍କା ଭଳି ହେଲେ ଆପଣଙ୍କର ଜ୍ଞାନ ପର୍ବତପ୍ରମାଣ!"

"ଠିକ୍ । ଦୁଇପୁରୁଷ ତଳେ ମରିଯାଇ ମିସ୍ତ୍ରୀମାନେ ଆମ୍ଭକୁ ଠକି ପାରିବେ ନାହିଁ । ଜଣେ ମରିଗଲେ ତା'ର ଋଣ ପରିଶୋଧ କରେ କିଏ?" ଏ ପ୍ରଶ୍ନ କଲାବେଳେ ରାଜାଙ୍କ ନୟନ ବେନି ଖଦ୍ୟୋତ ଭଳି ଚମକୁ ଥିଲା । ତାଙ୍କ ଯୁକ୍ତି ଅନୁସାରେ, ରଞ୍ଜୁର ପରି-ଜେଜେବାପା ନୂଆ ପ୍ରାସାଦର ମୁଖ୍ୟ ମିସ୍ତ୍ରୀ ହୋଇଥିବାରୁ ତାଙ୍କ ଉତ୍ତରାଧିକାରୀ ରୂପେ ରଞ୍ଜୁର ବାପା ଗିରଫ ହେଲେ ।

"ମୁଣ୍ଡ କାଟ!" ହେଲା ରାଜାଙ୍କ ସଂକ୍ଷିପ୍ତ ହୁକୁମ୍ ।

"ମହାରାଜ, କାହିଁ ପ୍ରାସାଦର ଶିଖର, କାହିଁ ଏ ଛିକେ ମୁଣ୍ଡ! ବରଂ ଏହାକୁ ହଜାରେ ବର୍ଷ ପାଇଁ କାରାରୁଦ୍ଧ କରାଯାଉ ।" ସୁପତି ପ୍ରତି ଦୟାବାନ୍ ଜଣେ ଅମାତ୍ୟ କହିଲେ ।

ହଜାରେ ବର୍ଷ କଥାଟା ରାଜାଙ୍କର ହୃଦୟଗ୍ରାହୀ ହେଲା । ସୁପତି କାରାରୁଦ୍ଧ ହେଲେ ।



ରଞ୍ଜୁ କ୍ରୋଧ ଓ ଦୁଃଖରେ ଭାଙ୍ଗି ପଡ଼ିଲ ବନ୍ଧୁମାନେ ତାକୁ ଧୈର୍ଯ୍ୟ ଧରିବାକୁ କହିଲେ କିନ୍ତୁ କାରାଗାରରେ ମାତ୍ର ଏକମାସ ପରେ ରଞ୍ଜୁର ବାପା ମୃତ୍ୟୁ ବରଣ କଲେ ।

"ତା'ହେଲେ ତ ବନ୍ଦୀ ଆମ୍ଭେ ଦେଇଥିବ ନଅଶହ ଅନେଶତ ବର୍ଷ ଏଗାର ମାସ କା ଦଣ୍ଡ ଫାଙ୍କି ଦେଲା!" ରାଜା ଅତିଜ୍ଞାନୀ ମାନ ଆଗରେ ନିଜ ହତାଶା ବ୍ୟକ୍ତ କଲେ ।

"ମହାରାଜ, ଯଦି ପୁଅ ବାପାର ସମ୍ପ ଭୋଗିବାକୁ ହକ୍‌ଦାର୍, ତେବେ ସେ ବାପା ଦଣ୍ଡ ନ ଭୋଗିବ କିଆଁ?" କହି ସର୍ବଦା ଦୁଇ ହାତ ଦଳି ହେଉଥିବା ଜ ଅମାତ୍ୟ ।



"ବାଃ, ବାଃ । ତମ ବୁଦ୍ଧି ବଳିଆ ଭଲ । ଏଣିକି ତମ ଉପାଧି ହେଲା ବଳିଆ । ...ିଁ, ଧରିଆଣ ବନ୍ଦୀର ପୁଅକୁ କର ତାକୁ ...ାଗାରରେ ।" ରାଜା ନିର୍ଦ୍ଦେଶ ଦେଲେ ।

କିନ୍ତୁ ସିପାହୀମାନେ ରାଜକୁଟିଁ ପହଞ୍ଚିବା ...ର୍ବରୁ ତା'ଠିଁ ଖବର ପହଞ୍ଚି ଯାଇଥିଲା । ...ସ ଖସି ପଳାଇଲା ।

• • •

...ଜହ୍ନରାତି । ରାଜୁ ଯାଇ ପର୍ବତର ମଧ୍ୟ ...ଦେଶରେ ପୁରୁଣା ପ୍ରାସାଦର ଭଗ୍ନାବଶେଷ ...ତରେ ପହଞ୍ଚିଲା । ସେ ବଣବୁଦା ଓ ଶିଳା-...ମାନ ତା'ର ଅତି ପରିଚିତ । ସେ ଖଣ୍ଡିଏ ...ଶରତ ସଫେଦ୍ ପଥର ଉପରେ ବସି ପଡ଼ିଲା । ସେଇଠି ବସି ସେ କେତେଥର ଫୁଲମାନଙ୍କୁ ଗୀତ ଶୁଣାଇଛି, ଗୁଣ୍ଡୁଚି, ନେଉଳ ଓ ପ୍ରଜାପତିଙ୍କୁ ଗପ କହିଛି ।

ବାପା କଥା ମନେ ପଡ଼ି ତା' ଆଖିରୁ ଲୁହ ଆସିଲା । ଖାଲି ଝିଙ୍କାରି ଓ ଗୋଟାଏ ପେଚାର ସାମୟିକ ଧ୍ୱନି ଛାଡ଼ିଦେଲେ ଚତୁର୍ଦ୍ଦିଗ ଥିଲା ନିସ୍ତବ୍ଧ । ବିତିଗଲା ଘଣ୍ଟାଏ ।

ହଠାତ୍ ତା'ର ମନେ ହେଲା, ପଛରେ କିଛି ଅତି ଉଜ୍ଜ୍ୱଳ ଦିଶୁଛି । ସେ ବୁଲି ଅନାଇଲା । ଯେଉଁଠି କେବଳ ଅନ୍ଧାର ପାଷାଣ ଛଡ଼ା ସେ କେବେ କିଛି ଦେଖି ନଥିଲା, ସେଠି ସେ ଜହ୍ନ ଆଲୁଅରେ ଦେଖିଲା ଏକ ଅପୂର୍ବ ନାରୀ ମୂର୍ତ୍ତି । ବାରମ୍ବାର ଅନାଇବା ପରେ ଯାଇ ସେ ନିଶ୍ଚିତ ହେଲା ଯେ ଏହା ଦୃଷ୍ଟିଭ୍ରମ ନୁହେଁ ।

ସେ ଉଠିପଡ଼ି ସେଆଡ଼େ ଅଗ୍ରସର ହେଲା । ପ୍ରତି ପଦପାତ ପରେ ସେ ଅନୁଭବ କରୁଥାଏ ଅଧିକରୁ ଅଧିକ ବିସ୍ମୟ । କି ଦୀପ୍ତିମାନ ସୌନ୍ଦର୍ଯ୍ୟ ! ମୂର୍ତ୍ତି ହାତରେ ଥିଲା ପଦ୍ମଫୁଲଟିଏ । ବେଶି ପାଖକୁ ଗଲେ ମୂର୍ତ୍ତି ଚମକି ପଡ଼ିବ ଓ ପଦ୍ମଫୁଲଟି ତଳେ ପଡ଼ିଯିବ କି ? ରାଜୁ ମନରେ ଦେଖା ଦେଉଥାଏ ଏହିଭଳି ଆଶଙ୍କା । ତା'ର ମନେ ହେଉଥାଏ, ଆଖି ସତେ ଅବା ତା'ର ଉଛୁଳି ଉଠୁଛି ! କିଛି ଦେଖିବାରେ ଏଭଳି ଆନନ୍ଦ, ଏଭଳି ଶିହରଣ ଥାଇପାରେ ବୋଲି ସେ କେବେ ବି କଳ୍ପନା କରି ନଥିଲା ।

ମୁହୂର୍ତ୍ତକ ପରେ ତା'ର ମନେ ପଡ଼ିଗଲା କନକ ଉପତ୍ୟକାର କମ୍ବଦନ୍ତୀ—ଅତୀତର ଶିଳ୍ପୀ-ରାଜା ଏକ ସୁବର୍ଣ୍ଣପ୍ରତିମା ଗଢ଼ିଥିବା କଥା । ଭୂମିକମ୍ପ ନିମ୍ନେ ଲୁକ୍କାୟିତ ପ୍ରତିମାକୁ ୃଶ୍ୟମାନ କରିଛି । ତା'ର ଆହୁରି ବି ମନେ େହଲା ସେ ଯେପରି ସେ ମୂର୍ତ୍ତିକୁ ପୂର୍ବରୁ େଦଖିଛି । ଆଶ୍ଚର୍ଯ୍ୟ! କାରଣ ସେ ମୂର୍ତ୍ତିର କୌଣସି ଛବି ଦେଖିବାର ପ୍ରଶ୍ନ ବି ନଥିଲା । ୁଆ ରାଜବଂଶ ଅମଳରେ ରାଜ୍ୟରୁ ଶିଳ୍ପ ଅଙ୍କନ ତ୍ୟାଦି ବିଦ୍ୟା ଲୁପ୍ତ ହୋଇଥିଲା ।

ସେ ଯାଇ ମୂର୍ତ୍ତିଟି ଛୁଇଁଲା । ଆନନ୍ଦ ଓ ତଜ୍ଞତାରେ ଭରିଗଲା ତା'ର ହୃଦୟ । ସେ ଝିପାରିଲା ନାହିଁ କାହା ପାଇଁ ସେ କୃତଜ୍ଞ ନୁଭବ କରୁଛି । ହୁଏତ ଯେଉଁ ଶକ୍ତି ତାକୁ ପଦ ଭିତରୁ ଏ ସୁନ୍ଦର ପରିବେଶକୁ ନେଇ ସିଲା, ତାହାରି ପାଇଁ ।

ରାଜୁ ସେ ପଦ୍ମ ସ୍ପର୍ଶ କଲା ଓ ତା'ପରେ ୂ ଧାରଣ କରିଥିବା ସୁନାର ସୁନ୍ଦର ଅଙ୍ଗୁଳି ଗୁଡ଼ିକୁ । ମୂର୍ତ୍ତିର ଏକ ଅଙ୍ଗୁଳିରୁ ମୁଦିଟିଏ ଖସି ଆସି ତା' ନିଜ ଅଙ୍ଗୁଳିରେ ପିନ୍ଧା-ହୋଇଗଲା । ତୀବ୍ର ପୁଲକ ଓ ବିସ୍ମୟରେ ସେ ଯେପରି ଅଚେତ ହୋଇଯିବ! ସେ ବସି ପଡ଼ିଲା । ତା'ର ମନେ ହେଲା, ସେ ତନ୍ଦ୍ରାଚ୍ଛନ୍ନ ହୋଇଯାଉଛି ।

"ଏ ମୂର୍ତ୍ତିରେ ଜୀବନ ସଞ୍ଚାର ହେବା ଚାହଁ?" ସେହି ଅବସ୍ଥାରେ ସେ ଶୁଣିଲା ଏ ପ୍ରଶ୍ନ । "ହଁ, ଚାହେଁ!" ସେ ଉତ୍ତର ଦେଲା ।

"ତେବେ ମୂର୍ତ୍ତି ଯେପରି ସୁରକ୍ଷିତ ରହିବ ସେତିକ ବ୍ୟବସ୍ଥା କର ତମେ ଏ ଝରଣା ଟପି ଚାଲିଯାଅ । ତମେ ପହଞ୍ଚିବ ଏକ ଭିନ୍ନ ରାଜ୍ୟରେ, ଭେଟିବ ଜଣେ ଦେବୀଙ୍କୁ । ଜୀବନ୍ୟାସର ରହସ୍ୟ ସେ କହିଦେବେ । ଆଉ, ଏ ମୂର୍ତ୍ତି ଜୀବନ ପାଇଲେ ତମେ ଯଦି ଏ କନ୍ୟାକୁ ବଧୂ ହେବାକୁ ଚାହଁ, ସେ ବର ବି ମାଗି ନେଇପାର!" କହିଲା ସେ ଅପୂର୍ବ କଣ୍ଠସ୍ୱର ।

(କ୍ରମଶଃ)





# ଗନ୍ଧର୍ବର ବିସ୍ମୟ

ନିଶା ଗରଜୁଥାଏ। ତୁହାକୁ ତୁହା ବର୍ଷା
ହେଉଥାଏ। ସାଇଁ ସାଇଁ ଶୀତ
ପବନରେ ଗଛଲତା ଥରି ଉଠୁଥାନ୍ତି। ଶ୍ୱାନ
ଶ୍ୱାପଦଙ୍କ ରଡ ଓ ବଜ୍ରଧ୍ୱନି ମଝିରେ ଶୁଭୁଥା
ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ଘନ ଘ
ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବ
ମୁହଁଟିମାନ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ ବିରକ୍ତ
ବୋଧ ନକରି ପୁନର୍ବାର ସେ ବୃକ୍ଷଟି ପାଖ
ଲେଉଟି ଆସିଲେ ଓ ବୃକ୍ଷାରୋହଣ
ଶବଟିକୁ ଉତାରି ଆଣିଲେ। ତେବେ
କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ
ଅତିକ୍ରମ କରିବାକୁ ଆରମ୍ଭ କରିବା ମା
ଶବସ୍ଥିତ ବେତାଳ କହିଲା, "ରାଜା!
ଭୟଙ୍କର ରାତରେ ତୁମେ ଯେ ଏଠା
ଏଭଳି କଷ୍ଟସାଧ୍ୟ କାର୍ଯ୍ୟ ହାତକୁ ନେଇ

## ବେତାଳ କଥା



...ହା ପଛରେ ଉଦ୍ଦେଶ୍ୟ କ'ଣ ? ତମେ କ'ଣ ...ଛି ଶକ୍ତି ବା ସିଦ୍ଧି ଗୃହଁ ? ମନେ ରଖ, ...ଲ ବା ସିଦ୍ଧି ଯେ ସବୁ କ୍ଷେତ୍ରରେ କାମ ...ବ, ସେକଥା ନୁହେଁ । ତମକୁ ଗୋଟିଏ ...ଷ୍ଟାନ୍ତ ଦେଉଛି, ମନଦେଇ ଶୁଣ । ଶୁଣିଲେ ...ାଘର ଲାଘବ ମନେ ହେବ ।"

...ବେତାଳ ଗପିଲା : ଗନ୍ଧର୍ବ ଲୋକର ...ବର୍ଣ୍ଣ ନାମକ ଜଣେ ଗନ୍ଧର୍ବ ଥିଲେ । ...ର ସେ ଭୂଲୋକକୁ ଆସି ପୃଥିବୀର ...ନ୍ଦର୍ଯ୍ୟ ଅବଲୋକନ କରିବାକୁ ମନ କଲେ । ...ଏ ଆକାଶମାର୍ଗରେ ପୃଥିବୀ ଉପର ଦେଇ ... ଯାଉଁ ଯାଉଁ ଗୋଟିଏ ସୁନ୍ଦର ଉଦ୍ୟାନ ଓ ...ଶୟ ଦେଖି ତହିଁ ଅବତରଣ କଲେ ।

ସେତେବେଳେ ସନ୍ଧ୍ୟା ସମୟ । ଉଦ୍ୟାନର ଗୋଟିଏ ଅଂଶରୁ ହାସ୍ୟରୋଳ ଭାସି ଆସି ତାଙ୍କ କାନରେ ପଡ଼ିବାରୁ ସେ ଦୃଷ୍ଟିପାତ କରି ଦେଖିଲେ ଦଳେ ଯୁବତୀ ଖେଳି ବୁଲୁଛନ୍ତି ।

ସେ ଅବାକ୍ ହୋଇ ସେମାନଙ୍କ ସୌନ୍ଦର୍ଯ୍ୟ ନିରୀକ୍ଷଣ କରିବାକୁ ଲାଗିଲେ । ସେମାନଙ୍କ ଭିତରେ ଜଣେ ବିଶେଷ ଭାବରେ ତାଙ୍କ ଦୃଷ୍ଟି ଆକର୍ଷଣ କଲା । ନକ୍ଷତ୍ରମାଳ ଭିତରେ ଚନ୍ଦ୍ରମା ଭଳି ଝଟକୁଥିବା ସେ ଯୁବତୀ ଉପରେ ଦୃଷ୍ଟି ନିବଦ୍ଧ ରଖି ସେ ସେମାନଙ୍କ ଆଡ଼େ ଅଗ୍ରସର ହେଲେ ।

ହଠାତ୍ ସୁରକ୍ଷିତ ରାଜ ଉଦ୍ୟାନ ଭିତରେ ଜଣେ ଅପରିଚିତ ଯୁବକକୁ ଦେଖି ସେ ଯୁବତୀମାନେ ହତଚକିତ ହୋଇଗଲେ । ଗନ୍ଧର୍ବ ଯାଇ ସେମାନଙ୍କୁ ପ୍ରଶ୍ନ କଲେ, "ଏ ସୁନ୍ଦରୀ ଜଣକ କିଏ ?"

ଜଣେ ଯୁବତୀ କହିଲେ, "ସେ ହେଉଛନ୍ତି ଏ ପୂର୍ଣ୍ଣଚନ୍ଦ୍ରପୁର ରାଜ୍ୟର ରାଜକୁମାରୀ ପ୍ରିୟଦର୍ଶିନୀ ।"

"ଆଃ, କି ଅପୂର୍ବ ସୁନ୍ଦରୀ! ଇଏ ସିନା ମୋ ଭଳି ଜଣେ ଗନ୍ଧର୍ବଙ୍କୁ ବିବାହ କଲେ ଠିକ୍ ହେବ । ମୁଁ ଏହାଙ୍କୁ ଗନ୍ଧର୍ବ ଲୋକକୁ ନେଇଯିବି ।" ଏହା କହି ସେ ରାଜକୁମାରୀଙ୍କ ହାତ ଧରି ଟାଣିଲେ ।

ରାଜକୁମାରୀ ଓ ତାଙ୍କ ପରିଚାରିକାମାନେ ଚିତ୍କାର କରି ଉଠିଲେ । ଉଦ୍ୟାନ ବାହାରେ

ଜଗି ରହିଥିବା ଜଣେ ସିପାହୀ ଦୌଡ଼ି ଆସି ନିଜ ତରବାରୀ ବାହାର କଲା ।

ତାହା ଦେଖି ଗନ୍ଧର୍ବ ହସିଲେ ଓ କହିଲେ, "ମୂର୍ଖ ! ମୁଁ ଜଣେ ଗନ୍ଧର୍ବ । ମୋ ଶକ୍ତି ତୋତେ ଜଣା ନାହିଁ । ମୁଁ ଯଦି ଅପମାନ ବୋଧ କରି ଅଭିଶାପ ଦେବି, ତେବେ ତୁ ପଙ୍ଗୁ ହୋଇଯିବୁ ।"

"ରାଜକୁମାରୀଙ୍କୁ ରକ୍ଷା କରିବା ମୋର କର୍ତ୍ତବ୍ୟ । ଯେଉଁ ବିପଦ ଆସୁ ନା କାହିଁକି, ଜୀବନ ଥିବା ଯାଏ ମୁଁ ମୋ କର୍ତ୍ତବ୍ୟ କରିବି । ତମେ ତାଙ୍କୁ ଛାଡ଼ିଦିଅ ।" ସିପାହୀ କହିଲା ।

କିନ୍ତୁ ଗନ୍ଧର୍ବ ଅଟ୍ଟହାସ୍ୟ କରି ରାଜକୁମାରୀଙ୍କୁ ଟାଣି ନେଇଯିବାକୁ ଉଦ୍ୟମ କରିବାରୁ ସିପାହୀ ତରବାରୀ ଉଠାଇଲା ।

"ତୁ ପଙ୍ଗୁ ହୋଇ ଯା !" ଅଭିଶାପ ଦେଲେ ଗନ୍ଧର୍ବ । କିନ୍ତୁ ସିପାହୀର କିଛି ହେଲା ନାହିଁ । ସେ ତରବାରୀ ଦ୍ୱାରା ଗନ୍ଧର୍ବଙ୍କୁ ଆଘାତ କରିବାକୁ ଚେଷ୍ଟା କଲା । ଆଘାତ ବସିବା ପୂର୍ବରୁ ଗନ୍ଧର୍ବ ଅଦୃଶ୍ୟ ହୋଇଗଲେ ।

ନିଜ ଅଭିଶାପ ବ୍ୟର୍ଥ ହେବାର ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ତେବେ ସେକଥା ଭୁଲିଯାଇ ପୃଥିବୀର ନାନା ଦୃଶ୍ୟ ଉପଭୋଗ କରୁଁ କରୁଁ ସେ ଗୋଟିଏ ବଣ ଭିତରେ ପଶିଲେ । ବଣ ଭିତରେ ଗୋଟିଏ ଗୁମ୍ଫା ଭିତରୁ କିଛି ଅପୂର୍ବ ଦ୍ୟୁତି ବାହାରୁଥିବାର ଦେଖି ସେ କୌତୂହଳୀ



ହୋଇ ତହିଁ ଭିତରକୁ ଉଙ୍କିମାରି ଦେଖି[ଲେ] ଗୁମ୍ଫାର ଶେଷ ପ୍ରାନ୍ତରେ ଖଣ୍ଡିଏ ମ[ଣି] ଝଟକୁଛି । "ଏହାକୁ ନେଇଯାଇ ମୁଁ ଗନ୍ଧ[ର୍ବ] ରାଜଙ୍କୁ ଦେବି ।" ଏହା ଭାବି ସେ ଗୁ[ମ୍ଫା] ଭିତରେ ପଶୁଛନ୍ତି, ବାହାରୁ କିଏ ଗର୍ଜନ [କରି] ପଚାରିଲେ, "କିଏ ସେ ମୋ ଗୁମ୍ଫା[ରେ] ପ୍ରବେଶ କରୁଛି ?"

ଗନ୍ଧର୍ବ ଅନାଇ ଦେଖିଲେ, ଗୋ[ଟିଏ] ରାକ୍ଷସ ବସି ଆରାମ କରୁଛି ।

"ମୁଁ ଜଣେ ଗନ୍ଧର୍ବ । ଗୁମ୍ଫା ଭିତ[ରେ] ଝଟକୁଥିବା ସେ ମଣି ମୋର ଦୃଷ୍ଟି ଆକ[ର୍ଷଣ] କଲା । ତେଣୁ ମୁଁ ତାକୁ ଆଣିବାକୁ ଭିତ[ରକୁ] ଯାଉଛି ।"

"ବାଃ, କେଡ଼େ ଆସ୍ପର୍ଦ୍ଧା! ସେ ମଣି ମୋର । ମୁଁ ବହୁ ପ୍ରକାର ମଣିନାଗଙ୍କୁ ତୁଷ୍ଟ କରି ତାହା ଆଣି ରଖିଛି । ତୋତେ ଲଜ୍ଜା ନାହିଁ, ତୁ ତାକୁ ଚୋରି କରିବାକୁ ପଶୁଥିଲୁ ?"

"ମୁହଁ ସମ୍ଭାଳି କଥା କହ ରାକ୍ଷସ । ମୋତେ ଅପମାନ ଦେଉଛୁ, ଏଡ଼େ ସାହସ ? ଜାଣୁ ମୋର ଶକ୍ତି କେତେ ? ଏହା କହି ଗନ୍ଧର୍ବ ମଣି ଆଡ଼କୁ ଅଗ୍ରସର ହେଲେ ।

ରାକ୍ଷସ ଉଠି ପଡ଼ି ତାଙ୍କ ଆଡ଼େ ମାଡ଼ିଗଲା । ସେ ଅଭିଶାପ ଦେଲେ, "ତୁ ଗୋଟାଏ ମାଟି ଢିଲରେ ପରିଣତ ହୋଇ ଯା !"

ରାକ୍ଷସର କିନ୍ତୁ କିଛି ହେଲା ନାହିଁ । ସେ ଗନ୍ଧର୍ବଙ୍କୁ ଧରି ପକାଇବାକୁ ବସିବା ମାତ୍ରେ ଗନ୍ଧର୍ବ ଅଦୃଶ୍ୟ ହୋଇ ପଳାଇ ଗଲେ ।

ଗନ୍ଧର୍ବ ଏଥର ଆହୁରି ଆଶ୍ଚର୍ଯ୍ୟ ହେଲେ । ତାଙ୍କ ଅଭିଶାପ-ଶକ୍ତି ପୃଥିବୀରେ କାମ କରୁନାହିଁ କିପରି ? ସେ ଏହି କଥା ଭାବି ଭାବି ବିମର୍ଷ ବୋଧ କଲେ ଓ ନିଜକୁ କହିଲେ, "ବିଧାତା ସମସ୍ତଙ୍କ ଗର୍ବ ଖର୍ବ କରନ୍ତି । ମୋର ଗର୍ବ ବି ଖର୍ବ ହେଲା !" ଏତିକିବେଳେ ଗୋଟିଏ ଗଛ ମୂଳରେ ଜଣେ ବୃଦ୍ଧ ପଥିକ ପଡିଯାଇ ମୁହଁଏ ପାଣି ମାଗୁଥିବାର ସେ ଶୁଣିଲେ । ସେ ଏଣେ ତେଣେ ଅନାଇଲେ । କିନ୍ତୁ ଆଖପାଖରେ ପାଣି ନଥିଲା । ସେ ବୃଦ୍ଧଙ୍କୁ ସାହାଯ୍ୟ କରିବା ପାଇଁ ବ୍ୟାକୁଳ ଭାବରେ ପାଣି ସନ୍ଧାନରେ କିଛି ବାଟ ଦୌଡିଯାଇ ଦେଖିଲେ ଜଣେ ତପସ୍ୱୀ ଗୋଟିଏ ବାଘଛାଲ ଉପରେ ଧ୍ୟାନସ୍ଥ ହୋଇ ବସିଛନ୍ତି । ତାଙ୍କ କମଣ୍ଡଳୁରେ ଜଳ ଅଛି ।



ସେ କହିଲେ, "ତପସ୍ୱୀ ମହାଶୟ! ଆପଣଙ୍କ କମଣ୍ଡଳୁରୁ ପାଣି ନେଇ ଜଣେ ପିପାସାର୍ତ୍ତ ପଥିକଙ୍କୁ ଦେଇପାରେଁ ?"

ତପସ୍ୱୀ ଆଖି ଖୋଲି କ୍ରୁଦ୍ଧ ହୋଇ କହିଲେ, "ମୂଢ଼! ଦଶବର୍ଷରେ ଥରେ ଏପରି ଯୋଗ ପଡ଼ିଥିଲା, ଯେତେବେଳେ ମୁଁ ମୋ ତପସ୍ୟାରେ ସିଦ୍ଧି ଲାଭ କଲେ ଶତ୍ରୁ ଉପରେ ବିଜୟ ଲାଭ କରିଥାନ୍ତି। ତୁ ମୋ ତପସ୍ୟା ଭାଙ୍ଗିଦେଲୁ। ତୋତେ ଅଭିଶାପ ଦେଉଛି, ତୁ ମୂକ ହୋଇ ଯା!" ଏହା କହି ତପସ୍ୱୀ ନିଜ କମଣ୍ଡଳୁରୁ ପାଣି ମୁନ୍ଧଏ ବାହାର କରି ଗନ୍ଧର୍ବ ଉପରକୁ ଛାଟିଦେଲେ।

ଗନ୍ଧର୍ବ କହିଲେ, "ତୁ ଶିଳା ବନିଯାଇ ଦଶବର୍ଷକାଳ ପଡ଼ି ରହିଥା।"

ସଙ୍ଗେ ସଙ୍ଗେ ତପସ୍ୱୀ ଶିଳା ବନିଗଲେ। ଗନ୍ଧର୍ବ ପାଣି ନେଇ ପଥିକଙ୍କୁ ଦେଲେ।

ଟିକିଏ ଚୁପ୍ ରହି ବେତାଳ ପ୍ରଶ୍ନ କଲା: "ରାଜା! ଗନ୍ଧର୍ବମାନଙ୍କର ଅନେକ ଆଶ୍ଚର୍ଯ୍ୟ ଶକ୍ତି ଥାଏ। ଅଥଚ ଏ କ୍ଷେତ୍ରରେ ଗନ୍ଧର୍ବଙ୍କ ଅଭିଶାପ ଶକ୍ତି ସାମାନ୍ୟ ସିପାହୀ ତଥା ରାକ୍ଷସ ଉପରେ କାମ କଲା ନାହିଁ, ଅଥଚ ତପସ୍ୱୀଙ୍କ ଉପରେ କାମ କଲା। ତପସ୍ୱୀଙ୍କ ଅଭିଶାପ ତାଙ୍କ ଉପରେ କାମ କଲା ନାହିଁ। ଏହା ବିସ୍ମୟକର କଥା ନୁହେଁ କି? କାହିଁକି ଏପରି ହେଲା? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"



ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ପ୍ରାଣୀକୁ ଖାଲି ତା'ର ବ୍ୟକ୍ତିଗତ ବଳ ରକ୍ଷା କରେ ନାହିଁ, ତା'ର ଆଦର୍ଶ, ତା'ର ବ୍ରତ, ତା'ର ଅଧ୍ୟବସାୟର ସ୍ୱତନ୍ତ୍ର ଶକ୍ତି ଥାଏ । ସେ ଶକ୍ତି ପ୍ରାଣୀର ସହାୟତା କରେ । ଏକଥା ସତ୍ୟ ଯେ ଗନ୍ଧର୍ବମାନଙ୍କର କେତେକ ଅସାଧାରଣ ଶକ୍ତି ଥାଏ । କିନ୍ତୁ ଅଭିଶାପ କଥା ଅଲଗା । ଅଭିଶାପ ଫଳିବାକୁ ହେଲେ ଦୁଇଟି ସର୍ତ୍ତ ପୂରଣ ହେବା ଦରକାର । ଯିଏ ଅଭିଶାପ ଦେବ, ସିଏ ବାସ୍ତବରେ କ୍ଷୁବ୍ଧ ହୋଇଥିବ; ତା' ପ୍ରତି ଅନ୍ୟାୟ କରା ହୋଇଥିବ । ଯାହା ପ୍ରତି ଅଭିଶାପ ଦିଆ ହେବ, ସେ କିଛି ଅନ୍ୟାୟ କରିଥିବ । ସିପାହୀର ସହାୟତା କରୁଥିଲା ତା'ର ନିଜର ଆଦର୍ଶ । ରାଜକୁମାରୀଙ୍କୁ ରକ୍ଷା କରିବାକୁ ସେ ନିଜର ବ୍ରତ ବୋଲି ମନେ କରୁଥିଲା । ତା'ର ସେହି ନିଷ୍ଠାହିଁ ଶକ୍ତି ରୂପେ ତାକୁ ରକ୍ଷା କଲା । ରାକ୍ଷସ ମଣିଟି କାହାଠୁଁ ଛଡ଼ାଇ ଆଣି ନଥିଲା; ସେ ମଣିନାଗକୁ ସନ୍ତୁଷ୍ଟ କରି ତାହା ଆଣିଥିଲା । ତେଣୁ ଏକ ପ୍ରକାର ସାଧନା ଦ୍ୱାରାହିଁ ସେ ତାହା ପାଇଥିଲା । ଉଭୟ କ୍ଷେତ୍ରରେ ଗନ୍ଧର୍ବ କେବଳ ସ୍ୱାର୍ଥପ୍ରେରିତ ହୋଇ କାମ କରୁଥିଲେ । ତେଣୁ ତାଙ୍କ ଶକ୍ତି ଅକାମୀ ହୋଇଗଲା । ତୃତୀୟ କ୍ଷେତ୍ରରେ ସେ ନିଜେ ନମ୍ର ଭାବରେ, ଜଣେ ତୃଷାତୁର ପଥିକକୁ ବଞ୍ଚାଇବା ନିମନ୍ତେ କାମ କରିବା ଫଳରେ ତାଙ୍କ ଶକ୍ତି ପ୍ରଖର ହୋଇ ଉଠିଲା । ତେଣେ ସେ ତପସ୍ୱୀ ଶତ୍ରୁର ବିନାଶ ଭଳି ଗୋଟାଏ ସ୍ୱାର୍ଥପର କାରଣରୁ ତପସ୍ୟା କରୁଥିଲେ, କୌଣସି ମହତ୍ ଉଦ୍ଦେଶ୍ୟ ପୂରଣ ପାଇଁ ନୁହେଁ । ତେଣୁ ତପସ୍ୱୀଙ୍କ ଶାପ କାର୍ଯ୍ୟକାରୀ ହେଲା ନାହିଁ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






# ସଚ୍ଚା ବିଦୂଷକ

କୋଶଳ ଦେଶର ରାଜା ଶୈଳପ୍ରତାପ ଦିନେ ତାଙ୍କ ବିଦୂଷକ କିଶୋର ଉପରେ ରାଗିଗଲେ । କାରଣ ରାଜା ଯାହା କହନ୍ତି, କିଶୋର ତା'ର ବିପରୀତ କଥା କହେ ।

"ତମେ ମୋ ଦରବାର ଛାଡ଼ି ବାହାରି ଯାଅ ! ଏହିକ୍ଷଣି ! ତମ ମୁହଁ ମୋତେ ଦେଖାଇବ ନାହିଁ ।" ରାଜା ଆଦେଶ ଦେଲେ । ବିଦୂଷକ "ଯେ ଆଜ୍ଞା !" କହି ଅଭିବାଦନ କରି ସଙ୍ଗେ ସଙ୍ଗେ ବାହାରିଗଲା ।

ସେଦିନ ଜଣେ ସାମନ୍ତ ରାଜାଙ୍କ ବାର୍ତ୍ତା ନେଇ ଚନ୍ଦ୍ରଶେଖର ନାମକ ତାଙ୍କ ବିଦୂଷକ କୋଶଳ ଦରବାରକୁ ଆସିଥାନ୍ତି । ରାତିରେ ରାଜା ମନ୍ତ୍ରୀଙ୍କୁ କହିଲେ, "ମୋର ମନେହେଲା ଚନ୍ଦ୍ରଶେଖର ଖୁବ୍ ଭଲ ବିଦୂଷକ । ମୁଁ ଭାବୁଛି କିଶୋର ସ୍ଥାନରେ ତାକୁ ନିଯୁକ୍ତ କରିବି ।"

ମନ୍ତ୍ରୀ କହିଲେ, "ମହାରାଜ ! ଅତୀତରେ ବି ଆପଣ କେତେଥର କିଶୋର ଉପରେ ରାଗି ଯାଇଛନ୍ତି, କିନ୍ତୁ ପରେ ପୁଣି ଶାନ୍ତ ହୋଇଛନ୍ତି । ଏଥର ବି ଏତେ ଶୀଘ୍ର ତାକୁ ପଦଚ୍ୟୁତ କରିଦେବା ଉଚିତ ନୁହେଁ ।"

ରାଜା ଚୁପ୍ ରହିଲେ । ରାତାରାତି ମନ
କିଶୋରକୁ ଡାକି ରାଜାଙ୍କ ମନୋଭାବ ଜଣା
ଦେଲେ । ସକାଳେ ରାଜା ଦରବାରକୁ ଯି
ବୋଲି ବାହାରି ବସିଛନ୍ତି ଓ ମନ୍ତ୍ରୀଙ୍କ
କିଛି ଆଲୋଚନା କରୁଛନ୍ତି, ସେତିକିବେ
କିଏ ଜଣେ ନିଜ ମୁହଁ ଖଣ୍ଡିଏ କନା
ଲୁଚାଇ ତାଙ୍କୁ ଅଭିବାଦନ କଲା ।

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ,
ଜୀବ କିଏ ?" ବିଦୂଷକ କିଶୋର କ
"ମହାରାଜ ! ମୁଁ ଆପଣଙ୍କ ଆଦେଶ
ଚଳୁଛି । ମୋ ମୁହଁ ଦେଖାଉ ନାହିଁ ।"

ମୁଁ ଭାବୁଛି ତମ ସ୍ଥାନରେ ବିଦୂଷକ ଚନ୍ଦ୍ର-ଶେଖରଙ୍କୁ ନିଯୁକ୍ତ କରିବି ।"

"ମହାରାଜ! ସେଥିରେ ଅସୁବିଧା କ'ଣ? ସେ ତ ଆପଣଙ୍କ ସାମନ୍ତ ରାଜାଙ୍କ ଦରବାରର ଅମାତ୍ୟ । ଆପଣଙ୍କ ଅଧୀନ ।" ବିଦୂଷକ କିଶୋର କହିଲା ।

ରାଜା ପଚାରିଲେ, "ସେ ଭଲ ବିଦୂଷକଟି?"

"ଖୁବ୍ ଭଲ ।" କିଶୋର କହିଲା ।

ରାଜା ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମେ ଏକଥା କହୁଛ?"

"ମହାରାଜ, ଆପଣ ଯାହା କହିବେ, ମୁଁ ତା'ର ବିପରୀତ କଥା କହିବାରୁ ଆପଣ ଅସନ୍ତୁଷ୍ଟ । ତେଣୁ ମୁଁ ସର୍ବଦା ଆପଣଙ୍କୁ ସମର୍ଥନ କରିବି ବୋଲି ଠିକ୍ କରିଛି ।" କିଶୋର କହିଲା ।

ରାଜା ଟିକିଏ ଭାବି କହିଲେ, "ଦେଖ କିଶୋର । ତମେ ଯଦି ଗୋଟାଏ ସର୍ତ୍ତ ପୂରଣ କରିପାରିବ, ତେବେ ତମ ପଦ ରହିବ । ବର୍ତ୍ତମାନ ଦରବାରରେ ତମେ ନିଜକୁ ନ୍ୟୁନ ନ କରି ଚନ୍ଦ୍ରଶେଖରଙ୍କୁ ଶ୍ରେଷ୍ଠ ବିଦୂଷକ ବୋଲି କହିପାରିବ? ହଁ, ତମେ ମୁହଁ ଦେଖାଇ ପାର ।" "ଯେ ଆଜ୍ଞା, ମହାରାଜ!" କିଶୋର କହିଲା ।

ରାଜା ଦରବାରକୁ ଗଲେ । କିଛି ସମୟ ପରେ କିଶୋର ସେଠାକୁ ଯାଇ କହିଲା, "ମହାରାଜ, ଆପଣଙ୍କୁ ଗୋଟିଏ ପରାମର୍ଶ ଦେବାର ଅଛି । ଯଦି କେବେ ଆପଣଙ୍କର ଏପରି ଦୁର୍ଭାଗ୍ୟ ହେବ ଯେ ଆପଣ ମୋ ଭଳି ଯୋଗ୍ୟ ବିଦୂଷକର ସେବାରୁ ବଞ୍ଚିତ ହେବେ, ତେବେ ଚନ୍ଦ୍ରଶେଖରଙ୍କୁ ବିଦୂଷକ ପଦରେ ନିଯୁକ୍ତ କରିବେ । କାରଣ ମୁଁ ଯେତେ ବିଦୂଷକଙ୍କୁ ଜାଣିଛି, ସେମାନଙ୍କ ଭିତରେ ସେ ଶ୍ରେଷ୍ଠ ।"

ରାଜା କିଶୋରର ବାକ୍‌ଚାତୁରୀରେ ଖୁସି ହୋଇ ତାକୁ ପୁରସ୍କାର ଦେଲେ ।



# ମାଣ୍ଡୁ



୧୬୧୮ ମସିହାରେ ପ୍ରଥମେ ମାଣ୍ଡୁରେ ପ୍ରବେଶ କରି ମୋଗଲ ସମ୍ରାଟ ଜାହାଙ୍ଗୀର ଲେଖିଲେ, "ମାଣ୍ଡୁର ଅନୁପମ ସୌନ୍ଦର୍ଯ୍ୟ ବିଷୟ ମୁଁ କା ଭାଷାରେ ଫୁଟାଇବ କପରି ?" ତ୍ରୟୋଦଶ ଶତାବ୍ଦୀରେ ଏ ସ୍ଥାନର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପାରମା ବଂଶର ରାଜାମାନେ ଏଠାରେ ଦୁ ନିର୍ମାଣ କରିଥିଲେ । ଏହାର ମୂ ନାମ ଥିଲା ମଣ୍ଡପ ଦୁର୍ଗ ।




କିମ୍ବଦନ୍ତି ଅନୁସାରେ ଥରେ ଜଣେ
କୃଷୀ ମାଟି ତାଡବା ବେଳେ ତା'
କୋଦାଳ ଗୋଟାଏ ପଥର ଦେହରେ
ବାଜି ସଙ୍ଗେ ସଙ୍ଗେ ସୁନା ହୋଇଗଲା।
ଜଣେ ବୁଦ୍ଧିମାନ ଲୋକ ସେ ବାଟରେ
ଯାଉଥିଲା। ସେ ବୁଝିଲା କି ତାହା
ଖଣ୍ଡିଏ ପରଶ ପଥର। ସେ ପଥର
ଖଣ୍ଡିକ ନେଇଗଲା। ସେଥିରେ ଅନ୍ୟ
ଧାତୁମାନ ଛୁଆଁଇ ସେସବୁକୁ ସୁନା
କରି ସେ ଅତ୍ୟନ୍ତ ଧନୀ ହେଲା।

ମେ ଧନସମ୍ପଦ ପ୍ରତି ସେ ଲୋକର
ତୃଷ୍ଣା ଆସିଗଲା। ଦିନେ ସେ ଯାଇ
ଜା ଜୟସିଂହଦେବଙ୍କୁ ଭେଟି ତା'
ଖରେ ଥିବା ସେ ଅଦ୍ଭୁତ ପରଶ
ଥରଟି ଯାଚିଲା। ଧନ ପ୍ରତି ବା କେଉଁ
ଲାର ଆକର୍ଷଣ ନ ହେବ? ରାଜା
ପରଶ ପଥର ଆଗ୍ରହରେ ଗ୍ରହଣ
ଲେ। ସେହି ପଥରରୁ ସୁନା ଉପୁଜାଇ
ହି ସୁନା-ଲବ୍ଧ ଧନରେ ସେ ମାଣ୍ଡୁ
ନିର୍ମାଣ କଲେ।





କିଛିଦିନ ପରେ ଧନସମ୍ପଦ ପ୍ରତି
ରାଜାଙ୍କର ଆଉ ଆକର୍ଷଣ ରହିଲା
ନାହିଁ। ସେ ନର୍ମଦା ନଦୀ କୂଳରେ
ବସି ପଥିକମାନଙ୍କୁ ସୁନା ଓ ଅନ୍ୟାନ୍ୟ
ଧନରତ୍ନ ବିତରଣ କରିବାକୁ ଲାଗିଲେ।
ଜଣେ ବ୍ରାହ୍ମଣ ଆସି ପହଞ୍ଚିଲେ। ରାଜା
ତାଙ୍କୁ ତାଙ୍କର ଅସଲ ସମ୍ପତ୍ତି ସେହି
ପରଶ ପଥରଟି ଦେଇଦେଲେ, ବ୍ରାହ୍ମଣ
ତାକୁ ସାମାନ୍ୟ ପଥର ମନେକରି
ରାଗରେ ନଦୀକୁ ଫୋପାଡ଼ି ଦେଲେ।

ପରେଶ ପଥର ଅବଲୁପ୍ତ ହେଲା । କାଳକ୍ରମେ ମାଣ୍ଡୁ ଦୁର୍ଗ ବି ଭୂଷୁଡ଼ି ପଡ଼ିଲା । ମାଲ୍ୱର ଶାସକ ରୂପେ ବାଜ୍ ବାହାଦୁର କିଛି କୋଠା ମରାମତ୍ କରି ସେଥିରେ ରହୁଥିଲେ । ବାଜ୍ ବାହାଦୁର ଥିଲେ ସୁଗାୟକ । ରୂପମତୀ ନାମକ ସ୍ଥାନୀୟ ସୁଗାୟିକା ତରୁଣୀକୁ ସେ ବିଭା ହେବାକୁ ମନ କଲେ ।






ବିବାହ ପ୍ରସ୍ତାବ ଶୁଣି ରୂପମତୀ କହିଲେ କି ସେ ନର୍ମଦା ନଦୀକୁ ମାଆ ବୋଲି ଭାବନ୍ତି । ନର୍ମଦାରେ ପ୍ରତ୍ୟହ ସ୍ନାନ ନ କଲେ ସେ ବଞ୍ଚିବେ ନାହିଁ । ବାଜ୍ ବାହାଦୁର୍ ପାହାଡ଼ ଉପରେ ଦୁର୍ଗରେ ରହନ୍ତି । ସେଠାରେ ନର୍ମଦା ନଦୀ ବା ମିଳିବ କାହୁଁ ? ବାଜ୍ ବାହାଦୁର ନର୍ମଦା ଦେବୀଙ୍କୁ ପୂଜା କଲେ ।

ରାତିରେ ନର୍ମଦା ଦେବୀ ତାଙ୍କୁ ସ୍ୱପ୍ନରେ କହିଲେ, "ଦୁର୍ଗ ଭିତରେ ଥିବା ତେନ୍ତୁଳି ଗଛ ମୂଳରେ ସାମାନ୍ୟ ଖୋଳିଲେ ମୋର ଏକ ଧାର ଝରଣା ତୁମେ ଦେଖା ଦେବ ।" ବାଜ୍ ବାହାଦୁର ସେ ନିର୍ଦ୍ଦେଶ ପାଳନ କରିବା ବେଳକୁ ସତକୁ ସତ ସେଠାରେ ସୁଶୀତଳ ପାଣି ଦେଖାଦେଲା । ରେୱା କୁଣ୍ଡ ନାମରେ ପରିଚିତ ସେ କୁଣ୍ଡ ଅଦ୍ୟାପି ବିଦ୍ୟମାନ ।





ଆକ୍‌ବର ମଲ୍‌ ଆକ୍ରମଣ କଲେ। ସଙ୍ଗୀତ ଓ କଳା ଚର୍ଚ୍ଚାରେ ସମୟ ଅତିବାହିତ କରୁଥିବା ବାଜ୍ ବାହାଦୁର ଏ ଯୁଦ୍ଧ ପାଇଁ ପ୍ରସ୍ତୁତ ନଥିଲେ। ସେ ପରାସ୍ତ ହୋଇ ପଳାୟନ କଲେ। ରୂପମତୀ ଆତ୍ମହତ୍ୟା କଲେ। ରୂପମତୀଙ୍କ ନିବାସ ଆଜିପାଏ ରହିଛି। ଦର୍ଶକ-ମାନଙ୍କ ମନରେ ତାହା ଦୁଃଖ ଉଦ୍ରେକ କରେ।

ଅଦ୍ୟାପି ଉଦ୍ୟମାନଁ ଅନ୍ୟ ଏକ କୋଠାର ନାମ ହେଲା ଜାହାଜ ମହଲ୍। ଏହାର ଗଠନ ସରଳ ଓ ସୁନ୍ଦର। ଏହାର ପରିବେଶ ମଧ୍ୟ ମନୋରମ। ଏଠାରେ ଠିଆ ହୋଇ ଚତୁର୍ଦ୍ଦିଗର ଧ୍ୱଂସାବଶେଷ ଆଡ଼େ ଦୃଷ୍ଟିପାତ କଲେ ଅତୀତର ବହୁ ସ୍ମୃତିରେ ମନ ଆକୁଳ ହୁଏ।





ବାଜ୍ ବାହାଦୁର୍ ତାଙ୍କ ଶେଷ ଜୀବନ ଆକ୍‌ବରଙ୍କ ଦରବାରରେ କଟାଇ-ଥିଲେ। ତାଙ୍କ ସଙ୍ଗୀତ ପ୍ରତିଭା ସମ୍ରାଟଙ୍କୁ ମୁଗ୍ଧ କରିଥିଲା। କିନ୍ତୁ ସେ ସର୍ବଦା ଉଦାସୀନ ରହୁଥିଲେ। ତାଙ୍କର ସୁନ୍ଦର ଦୁର୍ଗ ମାଣ୍ଡୁ ଓ ରୂପମତୀଙ୍କ କଥା ସେ ବା କିପରି ପାଶୋରି ଯାଇ ଜଣେ ଦରବାରୀ ଅମାତ୍ୟର ଆସନରେ ସୁଖୀ ହୁଅନ୍ତେ?



# ଯାଦୁ ସିଢ଼ି

ମଳୟଗିରି ରାଜ୍ୟ ଉପରେ ସେତେବେଳେ ଶାସନ କରୁଥିଲେ ରାଜା ମହୀପାଳ । ଦିନେ ସେ ଦରବାରରେ ବସିଛନ୍ତି, ଜଣେ କୁବ୍‌ଜା ବୁଢ଼ା ଗୋଟାଏ ସିଢ଼ି ଧରି ତାଙ୍କ ଆଗରେ ପହଞ୍ଚିଲା ଓ କହିଲା, "ମହାରାଜ! ଏ ସିଢ଼ିର ବିଶେଷ ଗୁଣ ଅଛି । ଏହାକୁ ମୋଠୁଁ ଛଡ଼ାଇ ନେବାକୁ ବସିଛି ଡାକୁ ମାନସିଂହ । ଆପଣ ଏହାକୁ ରକ୍ଷା କରନ୍ତୁ ।"

ଅବଶ୍ୟ ଡାକୁ ମାନସିଂହ ବିରୁଦ୍ଧରେ ସେତେବେଳକୁ ନାନା ଅଭିଯୋଗ ଆସି ରାଜାଙ୍କ ପାଖରେ ପହଞ୍ଚୁଥାଏ । କିନ୍ତୁ ଡାକୁ ଗୋଟାଏ ସିଢ଼ି ପାଇବା ନିମନ୍ତେ ଲାଳାୟିତ ହେବ, ଏ କଥାରେ ରାଜାଙ୍କର ବିଶ୍ୱାସ ନହେବା ସ୍ୱାଭାବିକ । ବୁଢ଼ାକୁ ଧମକ ଦେବା ଭଳି କଣ୍ଠରେ ପଚାରିଲେ, "ତମର ସିଢ଼ି ଏଡ଼େ ମୂଲ୍ୟବାନ? କ'ଣ ଏହାର ଗୁଣ?"

ବୁଢ଼ା ଏଣେ ତେଣେ ଅନାଇ କହିଲା, "ମହାରାଜ! ଏହାର ଗୁଣ ଅଛି ବୋଲି ଜାଣି ଡାକୁ ମାନସିଂହ ମୋତେ ହଇରାଣ କରୁଛି । ପୁଣି ଏତେ ଲୋକଙ୍କ ଆଗରେ ଏହାର ଗୁଣ ବଖାଣିବି? ଆପଣଙ୍କୁ ଗୋପନରେ ପାଇଲେ ସିନା କହନ୍ତି?"

ସଭାସଦ୍‌ମାନେ ବୁଢ଼ା ଆଡ଼େ ଅନାଇ ହସିଲେ । କେହି ତା' କଥାରେ ଗୁରୁତ୍ୱ ଦେଲେ ନାହିଁ ।

ରାଜା ପ୍ରଥମେ ଭାବିଲେ ବୁଢ଼ା ପାଗଳ । ଯାହାହେଉ, ପରେ ସେକଥା ବୁଝିବେ ବୋଲି ମନସ୍ଥ କରି ସେ ସିଢ଼ିକୁ ପ୍ରାସାଦର ଗୋଟାଏ କୋଣ ଘରେ ରଖିବାର ବ୍ୟବସ୍ଥା କରିଦେଲେ । ବୁଢ଼ା ମଧ୍ୟ ପ୍ରାସାଦରେ ରହିଲା ।

ରାଜା ତା'ପରେ ସେକଥା ଭୁଲିଗଲେ । କିନ୍ତୁ ସେଦିନ ରାତିରେ ମାନସିଂହ ପ୍ରାସାଦରେ

ସୁରେନ୍ଦ୍ର



ପ୍ରବେଶ କରି ସିନ୍ଧ ଚୋରି କରି ନେବାର ଚେଷ୍ଟା କଲା। ଅବଶ୍ୟ ସେ ସଫଳ ହେଲା ନାହିଁ, କିନ୍ତୁ ତା'ର ଏଭଳି ଦୁଃସାହସ ଯୋଗୁଁ ରାଜା ବହୁତ ରାଗିଗଲେ ଓ ସ୍ୱୟଂ ତାକୁ ଧରିବା ସକାଶେ ପ୍ରଯତ୍ନ ଆରମ୍ଭ କଲେ। ଡାକୁ ମାନସିଂହ କେଉଁ ବଣରେ ରହେ, ସେକଥା ସେ ଚରମାନଙ୍କଠାରୁ ବୁଝି ନେଲେ। ସେ ନିଜେ ଘୋଡ଼ା ଚଢ଼ି ସେ ବଣ ଆଡ଼େ ଚାଲିଲେ।

ବଣ ପାଖରେ କାଠୁରିଆ ଭଳି ଦିଶୁଥିବା ଜଣେ ଲୋକ ସହ ତାଙ୍କର ଭେଟ ହେଲା। କାଠୁରିଆ କହିଲା, "ଆପଣ ମହାରାଜାଟି ? ଆପଣଙ୍କୁ ଗୋଟାଏ ଗୁପ୍ତଧନର ସନ୍ଧାନ କିପରି ଦେବି ସେକଥା ଭାବୁଥିଲି। ଅଳ୍ପ ଦୂରରେ ଏ ଯେଉଁ ଗୁଂଫା ଦେଖୁଛନ୍ତି, ତାହାର ଭିତରେ ରହିଛି ବିପୁଳ ସୁନା।"

ରାଜା କୌତୁହଳୀ ହୋଇ ସେ କାଠୁରିଆ ସହ ଗୁଂଫା ପାଖକୁ ଗଲେ। ସେ ଯେମିତି ଗୁଂଫାରେ ପଶିଛନ୍ତି, ସେ ଲୋକ ସେମିତି କୌଶଳରେ ଖଞ୍ଜା ହୋଇଥିବା ଖଣ୍ଡିଏ ପଥର ତଳକୁ ପକାଇ ଦେଇ ଗୁଂଫା ମୁହଁ ବନ୍ଦ କରିଦେଲା।

ସେ ଲୋକ ଆଉ କେହି ନୁହେଁ, ଖୋଦ୍ ଡାକୁ ମାନସିଂହ। ରାଜାଙ୍କ ଘୋଡ଼ା ଚଢ଼ି ସେ ଆସି ପ୍ରାସାଦରେ ପହଞ୍ଚି ରାଜାଙ୍କ ସାନ ଭାଇ ରୁଦ୍ରପାଳଙ୍କୁ କିଛି ଗୋପନ କଥା କହିବା ନିମନ୍ତେ ପ୍ରାସାଦ ବାହାରେ ଥିବା ଉଦ୍ୟାନ ଭିତରକୁ ନେଇଗଲା ଓ କହିଲା କି ରାଜା ବଣ ଭିତରେ ଭୀଷଣ ବିପଦରେ ପଡ଼ିଥିଲେ ଓ ସେ ତାଙ୍କୁ ରକ୍ଷା କରିଛି। ରାଜାଙ୍କ ଘୋଡ଼ା ନେଇ ସେ ତାଙ୍କୁ ସାଙ୍ଗରେ ନେଇଯିବାକୁ ଆସିଛି। ରୁଦ୍ରପାଳ ଖୁସି ହୋଇ ନିଜ ହାରଟି ବାହାର କରି ତାକୁ ଦେଇଦେଲେ ଓ ନିଜ ଘୋଡ଼ା ବାହାର କରିବାକୁ ଗଲେ। ଡାକୁ ତତ୍‌କ୍ଷଣାତ୍ ଘୋଡ଼ା ଚଢ଼ି ସେଠାରୁ ପଳାଇଗଲା।

ଡାକୁ ସିଧା ଆସି ପହଞ୍ଚିଲା ସେ ଗୁଫା ପାଖରେ। ପଥର ଘୁଞ୍ଚାଇ ସେ ରାଜାଙ୍କୁ ବାହାର କରି କହିଲା, "ମୁଁ ଆପଣଙ୍କ ସାନ-ଭାଇଙ୍କୁ ଯାଇ ଜଣାଇଲି କି ଆପଣଙ୍କ ମୃତ୍ୟୁ ହୋଇଛି ଏବଂ ଏଣିକି ସେ ରାଜା ହେବେ।

ଆନନ୍ଦରେ ସେ ନିଜ ହାରଟି ଉପହାର ଦେଲେ ।"

ରାଜା ଏହା ଶୁଣି ଏତେ ପ୍ରଚଣ୍ଡ ଖପା ହେଲେ ଯେ ସେ ଡାକୁର ଅପରାଧ ଭୁଲିଯାଇ ସାନଭାଇକୁ ଦଣ୍ଡ ଦେବା ନିମନ୍ତେ ଘୋଡ଼ା ଛୁଟାଇ ପ୍ରାସାଦରେ ଆସି ପହଞ୍ଚିଲେ । ଦୈବକୁ ପ୍ରାସାଦ ଆଗରେହିଁ ସେ ସିଢ଼ିବାଲା ବୁଢ଼ା ତାଙ୍କୁ ଦେଖି କହିଲା, "ମହାରାଜ, ବର୍ତ୍ତମାନଠୁଁ ସୂର୍ଯ୍ୟାସ୍ତ ଭିତରେ ସିଢ଼ିର ବିଶେଷ ଗୁଣ ପ୍ରକଟ ହେବ । ମାସକରେ ଥରେ ଏପରି ହୁଏ ! ବର୍ତ୍ତମାନ ଯାହା ଆପଣଙ୍କର ପ୍ରକୃତରେ ହିତକର, ସିଢ଼ି ତାହାହିଁ ଆପଣଙ୍କୁ ଦେଖାଇ ଦେବ ।"



ରାଜା ବୁଢ଼ା ସହ ପ୍ରାସାଦ ଭିତରେ ସିଢ଼ି ଥିବା ଘର ଭିତରକୁ ଗଲେ । ବୁଢ଼ାର ନିର୍ଦ୍ଦେଶ ମୁତାବକ ସେ ସିଢ଼ି ଚଢ଼ିଲେ । ତା'ର ଶେଷ ପାହାଚକୁ ଯିବା ମାତ୍ରେ ତାଙ୍କ ଆଖିରେ ଝଟକି ଉଠିଲା ଏକ ଅଦ୍ଭୁତ ଦୃଶ୍ୟ । ତାହା ତାଙ୍କ ପିତାଙ୍କ ମୃତ୍ୟୁଶଯ୍ୟା ନିକଟରେ ଘଟିଥିଲା । ପିତା ତାଙ୍କୁ କହୁଥିଲେ, "ଜୀବନରେ କେବେହେଲେ ନ ବୁଝି ନ ଚିନ୍ତି କିଛି କାମ କରିବୁ ନାହିଁ । ବିଶେଷତଃ ତୋ ସାନଭାଇକୁ ସବୁବେଳେ ସ୍ନେହପୂର୍ଣ୍ଣ ଆଖିରେ ଦେଖୁଥିବୁ ।"

ରାଜା ସିଢ଼ିରୁ ଅବତରଣ କରି ସାନଭାଇକୁ ଭେଟି ତାହାଠୁଁ ସବୁ ଶୁଣିଲେ । ସେ ଅଜ୍ଞାନ-ବଶତଃ ତାକୁ ଦଣ୍ଡ ଦେବାକୁ ଯାଉଥିଲେ ଜାଣି ମନେ ମନେ ଗ୍ଲାନି ଅନୁଭବ କଲେ ।

କିନ୍ତୁ ପରେ ପରେ ସେ ଗୋଟିଏ ଅପ୍ରତ୍ୟାଶିତ କାମ କଲେ । ବୁଢ଼ା ଆଡ଼େ ବୁଲିପଡ଼ି ସେ କହିଲେ, "ତମେ ତମ ସିଢ଼ି ଧରି ଏହିକ୍ଷଣି ଏଠାରୁ ବାହାରି ଯାଅ ।"

"ମହାରାଜ! ଇଏ କ'ଣ କହୁଛନ୍ତି ? ସିଢ଼ିର ଅଲୌକିକ ଗୁଣ କ'ଣ ଆପଣଙ୍କୁ ବିସ୍ମିତ କରୁନାହିଁ ?" ବୁଢ଼ା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ବର୍ତ୍ତମାନ ଯାଉଛ ନା ମରିବ ?" ରାଜା ଧମକ ଦେଲେ ।

ବୁଢ଼ା ସିଢ଼ି ଧରି ପ୍ରାସାଦରୁ ବାହାରିଗଲା । ସଙ୍ଗେ ସଙ୍ଗେ ରାଜା ସେନାପତିଙ୍କୁ ଡାକ

ଗୋପନରେ କ'ଣ ନିର୍ଦ୍ଦେଶ ଦେଲେ । ସେନାପତି ତରବରରେ ଯାଇ କେତେଜଣ ସୈନିକଙ୍କ ସହ ଭଲ ରାସ୍ତାରେ ଘୋଡ଼ା ଛୁଟାଇ ଚାଲିଗଲେ ।

ବୁଢ଼ା ସିଦ୍ଧ ସହ ଯେମିତି ଯାଇ ଗୋଟିଏ ନିର୍ଜନ ସ୍ଥାନରେ ପହଞ୍ଚିଛି, ସେମିତି ତାକୁ ମାନସିଂହ ଆସି ସିଦ୍ଧ ତାହାଠୁଁ ଛଡ଼ାଇ ନେଲା । ସେ ଜାଣିଥିଲା କି ସୂର୍ଯ୍ୟାସ୍ତ ପୂର୍ବରୁ ସିଦ୍ଧ ତାକୁ କିଛି ନା କିଛି ହିତକର ଜ୍ଞାନ ଦେବ । ସେ ସିଦ୍ଧଟି ନିକଟବର୍ତ୍ତୀ ଗୋଟିଏ ଗଛରେ ଆଉଜାଇ ଶେଷ ପାହାଚକୁ ଉଠିଯିବା ମାତ୍ରେ ଦେଖିଲା, ଚାରିଆଡ଼ୁ ଧନୁର୍ଦ୍ଧର ଉଦ୍ୟତ କରି ଚାରିଜଣ ସୈନିକ ମାଡ଼ି ଆସୁଛନ୍ତି । ସେ ସତରେ ଅନାଇ ଦେଖିବା ବେଳକୁ ସେନାପତିଙ୍କ ସହ ସୈନିକ-ମାନେ ତାକୁ ଧରିବାକୁ ପ୍ରସ୍ତୁତ ହୋଇ ରହିଛନ୍ତି ।

ସେ ପଳାଇବାକୁ ବାଟ ନ ପାଇ ଗଛ ତଳକୁ ଆସି ବୁଢ଼ା ଗୋଡ଼ତଳେ ପଡି ତାକୁ ରକ୍ଷା କରିବାକୁ ବିନତି କଲା । ସେନାପତି ଓ ସୈନିକମାନେ ଆସି ତାକୁ ଧରିନେଲେ । ତାକୁ ସଙ୍ଗେ ସଙ୍ଗେ ଫାଶିରେ ଲଟକାଇବା ନିମନ୍ତେ ରାଜାଙ୍କ ନିର୍ଦ୍ଦେଶ ଥିଲା । କିନ୍ତୁ ବୁଢ଼ା କଥାରେ ସେମାନେ ତାକୁ ରାଜାଙ୍କ ପାଖକୁ ନେଇଗଲେ । ମାନସିଂହ ଦସ୍ୟୁବୃତ୍ତି ଛାଡ଼ି ରାଜାଙ୍କ ପାଖରେ ଚାକିରି କଲା । ରାଜା ବୁଢ଼ାକୁ ବହୁତ ପୁରସ୍କାର ଦେଲେ ଓ ହସି ହସି କହିଲେ, "ତମକୁ କାହିଁକି ଡରିଥିଲି ବୁଝିଲ ତ ?"

ବୁଢ଼ା ମନେ ମନେ ରାଜାଙ୍କର ପ୍ରଶଂସା କଲା । ସିଦ୍ଧ ସହ ତାକୁ ଏକୁଟିଆ ଦେଖିଲେ ମାନସିଂହ ନିଶ୍ଚୟ ଆସି ପହଞ୍ଚିବ, ରାଜା ଏହା ଜାଣି ମାନସିଂହକୁ ଧରିବା ନିମନ୍ତେ ତାକୁ ଛାଡ଼ ଦେଇଥିଲେ । ମାନସିଂହ ଯେ ଖାଲି ଦସ୍ୟୁ ହିସାବରେ ଭୀଷଣ ଥିଲା, ତାହା ନୁହେଁ, ସେ ତା'ର ମାରାତ୍ମକ ବୁଦ୍ଧି ଯୋଗୁଁ ରାଜା ଓ ତାଙ୍କ ଭାଇଙ୍କ ଭିତରେ ମନାନ୍ତର ସୃଷ୍ଟି କରିବାକୁ ବସିଥିଲା ।






ଯମୁନା ତଟରେ ଗୋପପୁର ନାମରେ ଥିଲା ଗ୍ରାମଟିଏ ଏହା ଥିଲା ପ୍ରାକୃତିକ ସମ୍ପଦରେ ସମୃଦ୍ଧିଶାଳୀ । ଗୋପପୁରର ଅଧିକାଂଶ ବାସିନ୍ଦା ଥିଲେ ଗୋପାଳ । ସେମାନଙ୍କର ଜୀବିକା ନିର୍ବାହର ପନ୍ଥା ଥିଲା ଗୋପାଳନ । ସେମାନଙ୍କର ରାଜା ଥିଲେ ନନ୍ଦ । ରୋହିଣୀ ଓ ଯଶୋଦାଙ୍କ କୋଳରେ ରାମ ଓ କୃଷ୍ଣ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲେ । କୃଷ୍ଣଙ୍କର ବୟସ ମାତ୍ର କେତେ ଦିନ । ମାସଟିଏ ବି ହୋଇ ନାହିଁ । କିନ୍ତୁ ତାଙ୍କର ଦିବ୍ୟ ସୌନ୍ଦର୍ଯ୍ୟରେ ଆବାଳବୃଦ୍ଧବନିତା ଆକୃଷ୍ଟ ହୋଇ ଦେଖିବାକୁ ଆସନ୍ତି । ଠିକ୍ ଏହି ସମୟରେ କଂସ ପଠାଇଲା ପୂତନାକୁ । ରାକ୍ଷସୀ ପୂତନାକୁ କାମ ଦିଆଯାଇଥାଏ ଶିଶୁମାନଙ୍କୁ କ୍ଷୀରପାନ କରାଇ ସେଥିରେ ବିଷଦେଇ ହତ୍ୟା କରିବାକୁ । ପୂତନା ଥିଲା ଏକ ନିର୍ଦ୍ଦୟ ରାକ୍ଷସୀ ।

ନବଜାତ ଶିଶୁମାନଙ୍କୁ ଖୋଜି ଖୋଜି ପୂତନା ମାରିଲା । ଦେଖିବାକୁ ବିକୃତ ଓ ବିଶାଳ । କିନ୍ତୁ ରାକ୍ଷସୀ ମାୟାରେ ସେ ନିଜକୁ ରୂପାନ୍ତରିତ କଲା ଏକ ସୁନ୍ଦରୀ ଯୁବତୀରେ । ନାନା ଗ୍ରାମ ଓ ଜନପଦ ସବୁ ବୁଲି ବୁଲି ସେ ଶିଶୁମାନଙ୍କୁ ବିଷଦୁଗ୍ଧ ପାନ କରାଇ ମାରିଲା । ଅବଶେଷରେ ସେ ପହଞ୍ଚିଲା ଗୋପପୁରରେ ନନ୍ଦରାଣୀ ଯଶୋଦାଙ୍କ ନିକଟରେ । ଯଶୋଦାଙ୍କ କୋଳରେ ଶିଶୁ କୃଷ୍ଣଙ୍କୁ ଦେଖି ସେ କିଛି ସମୟ ପାଇଁ ସ୍ତମ୍ଭିତ ହୋଇ ଠିଆ ହେଲା । ଭାବିଲା, "ଏ ତ ସାଧାରଣ

୩. ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା



ଶିଶୁ ନୁହେଁ । ସମସ୍ତଙ୍କଠାରୁ ଭିନ୍ନ ଏହି ଶିଶୁ ନିଷ୍ଠୁର କଂସର ଶତ୍ରୁ । ତାକୁ ମାରିଲେହିଁ ମୋର ଅଭିଷ୍ଟ ସିଦ୍ଧି ହେବ ।" ହାୟ ଯେଉଁ ଦିବ୍ୟ ଶିଶୁର ମଧୁର ସୌନ୍ଦର୍ଯ୍ୟ ସମସ୍ତଙ୍କୁ ମୁଗ୍ଧ କରି ଆକର୍ଷିତ କରୁଥିଲା ସେହି ଶିଶୁକୁ ହତ୍ୟା କରିବାର ଅଭିପ୍ରାୟ ନେଇହିଁ ପୂତନା ସେଠାକୁ ଆକର୍ଷିତ ହୋଇ ଆସିଲା । ମୁହଁରେ କପଟ ହସ ହସି ସେ ଯଶୋଦାଙ୍କୁ ଆସି କହିଲା, "ଦେଖ, ମୋର ଅଧିକ ଦୁଗ୍ଧ ହେବାରୁ ମୋ ପିଲା ଖାଇପାରୁନାହିଁ ତୁମର ନୂଆ ଜନ୍ମିଥିବା ଛୁଆଟି ଆହା କି ପତଳା ହୋଇଛି । ଦିଅ ମୁଁ ତାକୁ ଦୁଗ୍ଧ ପାନ କରାଇବି ।"

ଯଶୋଦା ରାକ୍ଷସୀ ପୂତନାର କପଟ କଥାରେ ଭୁଲିଗଲେ । ସେ ଭାବିଲେ, "ଏତେ ସ୍ୱାସ୍ଥ୍ୟବତୀ ଜଣେ ନାରୀଠାରୁ କ୍ଷୀରପାନ କଲେ ମୋ ପୁଅର ସ୍ୱାସ୍ଥ୍ୟ ଭଲ ହୋଇଯିବ । ଆହା କି ଭାଗ୍ୟ ମୋ ଶିଶୁର ।" ଏକଥା ଭାବି ସେ ମହା ଆନନ୍ଦରେ ଶିଶୁକୁ ପୂତନା ହାତକୁ ବଢ଼ାଇ ଦେଲେ । ଶିଶୁର ମଙ୍ଗଳ ହେବା ଆଶାରେ ସେ ଏ କାମ କଲେ । ସେ କ'ଣ ବୁଝିପାରିଥିଲେ ଏହି ଛଳନାମୟୀ ନିର୍ଦ୍ଦୟା ରାକ୍ଷସୀର କଥା ।

ପୂତନା ଆଗରୁ ବିଷ ପ୍ରୟୋଗ କରି ରଖିଥିଲା । ତେଣୁ ମନ ଆନନ୍ଦରେ କୃଷ୍ଣଙ୍କୁ ନେଇ ଦୁଗ୍ଧ ପାନ କରାଇଲା । କିନ୍ତୁ ଏ କ'ଣ ? କ୍ଷଣକ ମଧ୍ୟରେ ସେ ଆନନ୍ଦ ତା'ର କ୍ରମେ ଅଧିକରୁ ଅଧିକତର ଯନ୍ତ୍ରଣାରେ ପରିଣତ ହେଲା । ଶିଶୁ କୃଷ୍ଣ ଦୁଗ୍ଧପାନ କରୁ କରୁ ପୂତନାର ପଞ୍ଚପ୍ରାଣ ଶୋଷଣ କରିବାକୁ ଲାଗିଲେ । ପୂତନାର ଯନ୍ତ୍ରଣା ଅଧିକରୁ ଅଧିକତର ହେଲା ଓ ତା'ର ଚିତ୍କାର ବିକଟରୁ ବିକଟତର ହେଲା । ଭୟଙ୍କର ଶବ୍ଦ ସହିତ ତା'ର ରାକ୍ଷସୀ ରୂପ ପ୍ରକଟିତ ହେଲା । ସେ ସେହି ବିଭତ୍ସ ରାକ୍ଷସୀ ରୂପ ପ୍ରକଟ କରି ତଳେ ପଡ଼ିଗଲା । ସତେ ଅବା ଏକସଙ୍ଗେ ବଜ୍ରପାତ ଓ ଭୂମିକମ୍ପ ହେଲା । ସେହିଠାରେହିଁ ତା' ଜୀବନର ଇତି ।

ସେ ଶବ୍ଦରେ ସାରା ଗୋପପୁର କମ୍ପି ଉଠିଲା । ସମସ୍ତେ ଯିଏ ଯାହାର କାମ ଛାଡ଼ି

ଆସି ସେହି ସ୍ଥାନରେ ଏକତ୍ରିତ ହେଲେ । ସମସ୍ତଙ୍କର ସେହି ଗୋଟିଏ ପ୍ରଶ୍ନ, "ଶିଶୁ କୃଷ୍ଣ କାହିଁ ?"

କିଛି ସମୟ ପରେ ସମସ୍ତେ କୃଷ୍ଣଙ୍କୁ ଖୋଜି ଖୋଜି ଯାଇ ପୂତନା ପାଖରେ ପହଞ୍ଚି ଦେଖିଲେ ରାକ୍ଷସୀ ମରି ପଡିଅଛି ଓ ତା'ର ଛାତି ଉପରେ ବସିଛନ୍ତି ଶିଶୁ କୃଷ୍ଣ । ଯଶୋଦା ଏହାଦେଖି ଭୟରେ ଶିହରି ଉଠିଲେ ଓ ତତ୍‌କ୍ଷଣାତ୍ କୃଷ୍ଣଙ୍କୁ କୋଳକୁ ନେଲେ । ନନ୍ଦ ଓ ଅନ୍ୟ ଗୋପବାସୀଗଣ ସେଠାରେ ପହଞ୍ଚି ଏ ଅଲୌକିକ ଘଟଣା ଦେଖିଲେ । ଶିଶୁଟି ବଞ୍ଚି ଯାଇଛି ବୋଲି ସେମାନେ ବହୁ ପ୍ରକାର ପୂଜା, ଯଜ୍ଞ ଆଦି କରି ଭଗବାନ୍‌ଙ୍କ ପାଖରେ କୃତଜ୍ଞତା ଜଣାଇଲେ । ସମସ୍ତେ ମିଶି ଶିଶୁ କୃଷ୍ଣଙ୍କର ଦୀର୍ଘ ଜୀବନ କାମନା କରି ଆଶିର୍ବାଦ ଦେଲେ ।

ବସୁଦେବ ନିଜ ପୁତ୍ରମାନଙ୍କ କଥା ସଦା-ବେଳେ ଭାବୁଥା'ନ୍ତି । କିନ୍ତୁ ମୁହଁ ଖୋଲି କିଛି କାହାକୁ କୁହନ୍ତି ନାହିଁ । ଏସବୁ ସେ ଗୋପନରେ କରୁଥା'ନ୍ତି । କାରଣ କଂସ ଜାଣିଲେ ସର୍ବନାଶ ।

ବସୁଦେବ ଭାବୁଥା'ନ୍ତି ବଳରାମ, କୃଷ୍ଣ ଦୁହେଁ ରାଜପୁତ୍ର । ଏପର୍ଯ୍ୟନ୍ତ ସେମାନଙ୍କର ଜନ୍ମ ପରେ ବିଧିମତ ସଂସ୍କାର ଆଦି ହୋଇନାହିଁ । ସେମାନଙ୍କର ଜାତକ, ନାମକରଣ ଓ ଅନ୍ୟାନ୍ୟ ପୂଜାବିଧି କିଛି କରାଯାଇ ନାହିଁ । ସେସବୁ କରିବା ପାଇଁ ସେ ଗର୍ଗ ଋଷିଙ୍କ ପାଖରେ ପହଞ୍ଚିଲେ । ଗର୍ଗ ଋଷିଙ୍କୁ ସେ ଅନୁରୋଧ କରି





କହିଲେ, "ମହାଶୟ, ଆପଣ ଏ କାମଟି ନ କଲେ ଆଉ କିଏ କରିବ ? ପିଲା ଦୁଇଟି ଆଜି ରାଜଭବନରେ ଥାଇ କେତେ ଐଶ୍ୱର୍ଯ୍ୟ ମଧ୍ୟରେ କାଳ କାଟୁଥାନ୍ତେ । କିନ୍ତୁ ବିଧିର ବ୍ୟବସ୍ଥା ଅନ୍ୟ ପ୍ରକାର । କି ବିଡମ୍ବନା । ଏବେ ପର୍ଯ୍ୟନ୍ତ ଦୁଇ ପୁଅଙ୍କର ଜାତକ, ନାମକରଣ ଓ ପୂଜାଯଜ୍ଞ କିଛି ହୋଇନାହିଁ । ଆପଣ ଯଦି ଦୟାକରି ଏ କାର୍ଯ୍ୟଟି କରନ୍ତି ମୁଁ ନିଜକୁ ଧନ୍ୟ ମନେ କରିବି । ଏସବୁ ବିଷୟରେ ଯେପରି କେହି ବିନ୍ଦୁ ବିସର୍ଗ ନ ଜାଣେ । ସେ ବିଶ୍ୱାସ ମୋର କେବଳ ଆପଣଙ୍କ ଉପରେ ଅଛି ।"

ଗର୍ଗ ଋଷି ତ ସେହି ସୁଯୋଗ ଅପେକ୍ଷାରେ ଥିଲେ । ସେ ଅତ୍ୟନ୍ତ ଆନନ୍ଦର ସହିତ ନିଜର ସମ୍ମତି ପ୍ରଦାନ କଲେ । ଗର୍ଗ ଋଷି ନିଜର ତପସ୍ୟା ବଳରେ ଜାଣିପାରିଥିଲେ ଯେ ସ୍ୱୟଂ ଭଗବାନ କୃଷ୍ଣ ରୂପରେ ଜନ୍ମ ନେଇଛନ୍ତି । ଭଗବାନଙ୍କର ଦର୍ଶନ କରିବା କେତେ ଲୋକଙ୍କ ଭାଗ୍ୟରେ ଯୁଟେ । ପୁଣି ସେ ଯାଇ ଭଗବାନଙ୍କୁ ଶିଶୁ ରୂପରେ ଦେଖିବେ ଓ ତାଙ୍କର କାମ କରିବେ । ପ୍ରଭୁଙ୍କ କୃପା ଜାଣି ମନେ ମନେ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଗୋପପୁରକୁ ଗଲେ । ସେଠାରେ ସେ ଶିଶୁ କୃଷ୍ଣ ଓ ବଳରାମଙ୍କର ନାମକରଣ କଲେ ଓ ଜାତକ ପ୍ରସ୍ତୁତ କଲେ । ଏହାପରେ ପରୋକ୍ଷ ଭାବରେ ଓ ଗୋପନରେ ବସୁଦେବ ନିଜର ପୁତ୍ର ଦୁହିଁଙ୍କର ଯତ୍ନ ନେଉଥା'ନ୍ତି । ନନ୍ଦ ମଧ୍ୟ କୃଷ୍ଣଙ୍କର ମଙ୍ଗଳ ପାଇଁ ଅନେକ ବ୍ରାହ୍ମଣ ଭୋଜନ ଓ ଦାନ ଧର୍ମ କରାଇଲେ । ଗୋପୀ ଗୋପାଳମାନେ ଏହି ଅଲୌକିକ ଶକ୍ତିସମ୍ପନ୍ନ ଦିବ୍ୟ ଶିଶୁକୁ ପାଇ ଆନନ୍ଦରେ ନାନା ଉତ୍ସବ କଲେ ।

ଏଣେ ମଥୁରାରେ କଂସ ଖବର ପାଇଗଲା କି ପୁତନାକୁ ଗୋଟିଏ ଶିଶୁ ବଧ କରିଛି । ସେ ମନେ ମନେ ନିଶ୍ଚିତ ହୋଇଗଲା ଯେ ଏହି ଶିଶୁ ନିଶ୍ଚୟ ତା'ର ଶତ୍ରୁ ନହେଲେ ପୁତନାକୁ କିଏ ପ୍ରାଣରେ ମାରିପାରେ ? ତା'ପରେ ଅନ୍ୟାନ୍ୟ ବିଶ୍ୱସ୍ତ ରାକ୍ଷସ ରାକ୍ଷସୀମାନଙ୍କୁ ଡକାଇ ସେ ଶିଶୁ କୃଷ୍ଣଙ୍କୁ ମାରିବା ପାଇଁ ନାନା ଯୋଜନା ପ୍ରସ୍ତୁତ କଲା । ସେହି



ଭୟଙ୍କର ରାକ୍ଷସମାନଙ୍କ ମଧ୍ୟରୁ ଜଣେ ଥିଲା ଶକଟାସୁର । ସେ କଂସକୁ ଖୁସି କରିବା ପାଇଁ ଆଗଭର ହୋଇ ବାହାରିଲା । ସେ କହିଲା, "ଛାର ଗୋଟାଏ ଶିଶୁକୁ ମାରିବା ପାଇଁ ଏତେ କଥା ? ମୁଁ ଶିଘ୍ର ଯାଇ ତାକୁ ମାରିବି ଓ ଆପଣଙ୍କୁ ଶତ୍ରୁଠାରୁ ନିର୍ଭୟ କରାଇବି । ଦେଖନ୍ତୁ ମୋର ପରାକ୍ରମ ।"

ମଥୁରାପୁରରୁ କଂସଠାରୁ ବିଦାୟ ନେଇ ବଡ଼ ଅହଂକାର ସହିତ ଶକଟାସୁର ଯାଇ ଗୋପପୁରରେ ପହଞ୍ଚିଲା । ସେଠାରେ ଯାଇ ଦେଖିଲା ଗୋଟିଏ ଶଗଡ଼ ତଳେ ଶିଶୁ କୃଷ୍ଣ ଶୋଇଛନ୍ତି, ମାତା ଯଶୋଦା ପୁନି କୃଷ୍ଣଙ୍କୁ ମୁହଁରେ ଖରା ନ ପଡ଼ିବା ପାଇଁ ଏକ ଶକଟର ଛାଇରେ ଶୁଆଇ ରଖିଥା'ନ୍ତି । ଏତେ ସୁନ୍ଦର ଏକ ସୁଯୋଗ ଦେଖି ଅସୁର ସୂକ୍ଷ୍ମଦେହ ଧରି ଶକଟ ଭିତରେ ପଶିଲା । ଭଗବାନ କୃଷ୍ଣ ଶିଶୁ ହେଲେହେଁ ଜନ୍ମରୁ ସଚେତନ ଥିଲେ । ସେ ନିଦରୁ ଉଠି ପଡ଼ି ହାତଗୋଡ଼ ଛାଟି ଖେଳୁ ଖେଳୁ ତାଙ୍କ ପାଦ ବାଜି ସମଗ୍ର ଶକଟଟି ତଳେ ପଡି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ଓ ଶକଟାସୁରର ମୃତ୍ୟୁ ଘଟିଲା । ଏତେ ଟିକିଏ ଛୁଆର ପାଦ ବାଜି ଏଡ଼େ ବଡ଼ ଶକଟଟି ଲେଉଟି ପଡିଲା ଓ ତା' ଦେହରୁ ରାକ୍ଷସ ବାହାରି ମରି ଶୋଇଲା । ଏସବୁ ଦେଖି ତ ଯଶୋଦା ଭୟରେ ମୂର୍ଚ୍ଛା ହୋଇଗଲେ । ତା'ପରେ ଚେତା ଫେରି ପାଇ ପୁଅକୁ ଭଲ ଅବସ୍ଥାରେ ଦେଖି କୋଳକୁ ନେଇ ମନେ ମନେ ଅନେକ ଦେବାଦେବୀଙ୍କୁ ପ୍ରାର୍ଥନା କଲେ ପୁଅର ମଙ୍ଗଳ ପାଇଁ । ଏତେ ବଡ଼ ଏକ ରିଷ୍ଟ କଟିଯିବାରୁ ସେଥିପାଇଁ ବହୁ ପୂଜା ଯଜ୍ଞ କଲେ ।

ନନ୍ଦ ରାଜା ସେତେବେଳେ ଘରେ ନଥିଲେ । ଘରକୁ ଫେରିବା ବେଳେ ଦୂରରୁ ଦେଖିଲେ ଶଗଡ଼ଟି ଭାଙ୍ଗି କାଠଗଦା ହୋଇ ପଡିଛି । ରାକ୍ଷସ ମରି ଶୋଇଛି । ସେ ଜାଣନ୍ତି ବେଳେ ବେଳେ ଯଶୋଦା ଶଗଡ଼ ଛାଇରେ କୃଷ୍ଣଙ୍କୁ ଶୁଆନ୍ତି । ସେ ମଧ୍ୟ ବ୍ୟସ୍ତ ହୋଇ ପଡ଼ିଲେ କୃଷ୍ଣଙ୍କ ପାଇଁ । ସେ ସମସ୍ତଙ୍କୁ ପଚାରିଲେ "କୃଷ୍ଣର କ'ଣ ହେଲା, ସିଏ ବଞ୍ଚିଛି ତ ?

ଗୋଟାଏ ବିପଦ ପରେ ପୁଣି ଆଉ ଗୋଟାଏ ବିପଦ । ନନ୍ଦ ବହୁତ ବ୍ୟସ୍ତ ହୋଇ ଘରକୁ ଦୌଡ଼ିଲେ । କୃଷ୍ଣ ଭଲ ଅଛୁ ଜାଣି ଖୁସି ହେଲେ । ଖାଲି ସେତିକି ନୁହେଁ ଶିଶୁ କୃଷ୍ଣର ପାଦ ବାଜି ଯେ ଶକଟଟି ଭାଙ୍ଗି ଯାଇଛି ଓ ଅସୁର ମରିଛି ଏହି ଅଲୌକିକ ଘଟଣା ଅନୁଧ୍ୟାନ କରି ସେ ମନେ ମନେ କୃଷ୍ଣରୂପୀ ନାରାୟଣଙ୍କୁ ପ୍ରଣାମ କରୁଥିଲେ । କିନ୍ତୁ ବାହ୍ୟ ଭାବରେ ଜଣେ ସ୍ନେହମୟ ପିତାର ବାତ୍ସଲ୍ୟ ପ୍ରକାଶ କରି ସେ କୃଷ୍ଣଙ୍କୁ କୋଳକୁ ନେଇ ବହୁତ ଆଦର କଲେ । ଏଣିକି ଗୋପପୁରର ଆବାଳବୃଦ୍ଧବନିତା ଶିଶୁ କୃଷ୍ଣଙ୍କର ଯେପରି ବିପଦ ନ ପଡ଼େ ସେପାଇଁ ସଜାଗ ହୋଇ ରହିଲେ ।



ଏଇଭଳି ଭାବରେ ନାନା ବିପଦ ମଧ୍ୟରେ କୃଷ୍ଣ କ୍ରମେ ବଡ଼ ହେଉଥା'ନ୍ତି । ବର୍ଷକର ହୋଇଯିବାରୁ ଧୀରେ ଧୀରେ କାନ୍ଥୁବାଡ଼ ଧରି ଚାଲି ଶିଖିଲେ । ଶିଶୁ କୃଷ୍ଣଙ୍କର ମଧୁର ବାଲଲୀଳା ଦେଖି ସମସ୍ତେ ମୁଗ୍ଧ ହେଉଥା'ନ୍ତି । ମାତା ଯଶୋଦା ଶିଶୁ କୃଷ୍ଣଙ୍କୁ ଦୁଧ, ଦହି, ଲବଣୀ, ଘିଅ ସବୁ ଖୁଆଉଥା'ନ୍ତି । କିନ୍ତୁ କୃଷ୍ଣ ଲବଣୀ ଖାଇବା ପାଇଁ ସର୍ବଦା ଆଗ୍ରହ ଦେଖାଉଥା'ନ୍ତି । ଗୋପୀମାନେ ଲବଣୀ ନ ଦେଲେ ସେମାନଙ୍କ ଶାଢ଼ୀର ଅଞ୍ଚଳ ଧରି ବହୁତ ହଟ ଲଗାନ୍ତି । ପାଦରେ ନୂପୁର; ମଥାରେ ଛୋଟ ଛୋଟ ବାଳରେ ଚୁଟି କରାହୋଇ ମୟୂରଚନ୍ଦ୍ରକାଟିଏ ଖୋସା ହୋଇଥାଏ, ଅଙ୍ଗ ପ୍ରତ୍ୟଙ୍ଗରେ ନାନା ପ୍ରକାରର ରତ୍ନ ଅଳଙ୍କାର । ସେ ମଧୁର ମୋହନ ମୂର୍ତ୍ତି ଯିଏ ଦେଖେ ସେ ଆଖି ଫେରାଇ ନେଇ ପାରୁ ନଥାଏ । ଲବଣୀ ଖାଇବା ପାଇଁ ବହୁତ ଥର ହଟ ଲଗାନ୍ତି ପୁଣି ଗୋପୀକାମାନଙ୍କ ଅନୁରୋଧରେ ଗୋଡ଼ରେ ଘୁଙ୍ଗୁର ପିନ୍ଧି ଖୁବ୍ ନାଚ କରନ୍ତି । ଏସବୁ ମଧୁରଲୀଳାମୃତ ପାନ କରି ସାରା ଗୋପପୁର ଆନନ୍ଦରେ ଥାଏ ।

ଲବଣୀ ପାଇଲେ ସାରା ସଂସାରକୁ ଯେପରି ସେ ବାଣ୍ଟିବେ । ତାଙ୍କ ହାତରୁ ଲବଣୀ ଟିକିଏ ପାଇବାକୁ କେବଳ ଯେ ଗୋପ-ବାଳକମାନେ ଦୌଡ଼ୁଥା'ନ୍ତି ସେତିକି ନୁହେଁ

ପଶୁପକ୍ଷୀମାନେ ମଧ୍ୟ ଆନନ୍ଦରେ ଦୌଡ଼ି ଆସନ୍ତି ତାଙ୍କ ପାଖକୁ । ଲବଣୀ ଯଥେଷ୍ଟ ନ ମିଳିଲେ ସେ ଅନ୍ୟ ଗୋପବାଳକମାନଙ୍କୁ ସାଥିରେ ଧରି ଗୋପାଳମାନଙ୍କ ଘରେ ପଶି ଚୋରି କରନ୍ତି, ହାଣ୍ଡି ଭାଙ୍ଗନ୍ତି । ତେଣୁ ତାଙ୍କୁ ସମସ୍ତେ 'ଲବଣୀ ଚୋର' ବୋଲି ମଧ୍ୟ ଡ଼ାକିଲେ ।

ତାଙ୍କ ଲୀଳାର ଅନ୍ତ ନାହିଁ । ସେ ଲୀଳାର ମାଧୁରୀ ଗୋପବାସୀଙ୍କ ହୃଦୟକୁ ପ୍ରତିକ୍ଷଣରେ ପ୍ଲାବିତ କରୁଥାଏ । ସେ ନୂପୁର ପିନ୍ଧି ନାଚନ୍ତି, ମୟୂରମାନେ ମଧ୍ୟ ତାଙ୍କ ସହ ତାଳ ଦେଇ ନାଚନ୍ତି । ସେ ପଶୁପକ୍ଷୀମାନଙ୍କ ମଧ୍ୟରେ ନିର୍ଭୟରେ ଖେଳି ବୁଲନ୍ତି । ସେମାନେ କିଛି ନ ବୁଝିଲେ ମଧ୍ୟ ଜଗତକର୍ତ୍ତା ନାରାୟଣଙ୍କୁ ଏତେ ପାଖରେ ପାଇ ଦିବ୍ୟ ଉଲ୍ଲାସରେ ନାଚି ଉଠନ୍ତି । ଗୋପବାଳକମାନେ ତ କ୍ଷଣକ ପାଇଁ ତାଙ୍କୁ ଛାଡ଼ନ୍ତି ନାହିଁ । ଗୋପୀମାନଙ୍କ ଘରେ ପଶି ହାଣ୍ଡି ଭାଙ୍ଗି ଲବଣୀ ଆଣି ବାଣ୍ଟି ଦିଅନ୍ତି ତଥାପି ସେମାନେ ତାଙ୍କ ଉପରେ ରାଗି ପାରନ୍ତି ନାହିଁ । କେତେବେଳେ ବା ସାଧାରଣ ଶିଶୁ ପରି କାନ୍ଦନ୍ତି, କେତେବେଳେ ବା ହସନ୍ତି, କେତେ-ବେଳେ ନାନା ହଠ ଲଗାଇ ଗୋପୀଗୋପାଳଙ୍କୁ ବ୍ୟତିବ୍ୟସ୍ତ କରନ୍ତି । କିନ୍ତୁ ତଥାପି ସେ ସମସ୍ତିଙ୍କର ପ୍ରିୟ ।

କୃଷ୍ଣ ଯେତେ ଯେତେ ବଡ଼ ହେଲେ ସେତେ ସେତେ ଦୁଷ୍ଟାମି ତାଙ୍କର ବଢ଼ିଲା । କିନ୍ତୁ ତଥାପି ସମସ୍ତିଙ୍କର ସେ ପ୍ରାଣପ୍ରିୟ କୃଷ୍ଣ ଯାହାକୁ ନ ଦେଖିଲେ ଗୋପପୁର ପାଗଳ ହୋଇ ଯାଉଥିଲା । ତାଙ୍କର କାର୍ଯ୍ୟ ଏକ ସାଧାରଣ ବାଳକର କାର୍ଯ୍ୟ ନଥିଲା । ତାଙ୍କ ଅଲୌକିକ ଶକ୍ତି, ଦିବ୍ୟ ତେଜ ଓ ମଧୁର ଲୀଳା, ସବୁ ସାରା ଗୋପପୁରକୁ ଅତି ନିବିଡ଼ ଭାବରେ ଆକୃଷ୍ଟ କରି ରଖିଥାଏ । ବାଳକ କୃଷ୍ଣ ଥିଲେ ଯେପରି ସମସ୍ତିଙ୍କର ଜୀବନ, ସମସ୍ତିଙ୍କର ପ୍ରିୟାଦପି ପ୍ରିୟ ।





# ଭବିଷ୍ୟତ ବାଣୀ

ଯାମୁନଗରର ରାଜା ହରିକାନ୍ତ ଭୋଗବିଳାସରେ ଥାଇ ଅତି ନିଶ୍ଚିନ୍ତ ମନରେ ଶାସନ କାର୍ଯ୍ୟ ଚଳାଉଥା'ନ୍ତି । କାରଣ ଏକେ ତ ଶତ୍ରୁଭୟ ପ୍ରାୟ ନଥିଲା; ଦ୍ୱିତୀୟରେ ମନ୍ତ୍ରୀମାନେ ଅତ୍ୟନ୍ତ ବିଶ୍ୱସ୍ତ ଓ କାର୍ଯ୍ୟଦକ୍ଷ ।

କିଛିଦିନ ପରେ ଦେଖାଗଲା କ୍ରମଶଃ ରାଜା ଅଧିକରୁ ଅଧିକ ମୋଟା ହେବାକୁ ଲାଗିଲେ । ଶେଷରେ ଏତେ ମୋଟା ହେଲେ ଯେ ଗୋଟିଏ ସ୍ଥାନରୁ ଉଠିବା ତାଙ୍କ ପକ୍ଷେ କଷ୍ଟସାଧ୍ୟ ହୋଇ ପଡ଼ିଲା । ସେ ଦେଖିଲେ ଅନ୍ୟମାନେ କେତେ ସହଜରେ ବୁଲାଚଲା କରି ପାରୁଛନ୍ତି । ମନେ ମନେ ସେ ବଡ଼ ଦୁଃଖିତ ହୋଇ ଭାବିଲେ କି ଏଥିପାଇଁ କି ପ୍ରତିକାର କରାଯିବ ।

ରାଜା ମନ୍ତ୍ରୀମାନଙ୍କୁ ଡକାଇ ଏ ସଂକ୍ରାନ୍ତରେ ପରାମର୍ଶ କଲେ । ମନ୍ତ୍ରୀମାନେ ରାଜ୍ୟର ବିଶିଷ୍ଟ ବୈଦ୍ୟମାନଙ୍କୁ ଡକାଇଲେ । ଚିକିତ୍ସା ଆରମ୍ଭ ହେଲା । କିନ୍ତୁ ଖାଦ୍ୟ ଉପରେ ବୈଦ୍ୟମାନଙ୍କ ଉପଦେଶ ଅନୁସାରେ ନିୟନ୍ତ୍ରଣ ରଖିପାରିଲେ ନାହିଁ । ଫଳରେ ଔଷଧ କିଛି କାମ କଲା ନାହିଁ । ତେଣୁ ବାଧ୍ୟ ହୋଇ ବୈଦ୍ୟମାନେ ଚିକିତ୍ସା ବନ୍ଦ କରି ନିଜ ଘରକୁ ଫେରିଗଲେ ।

ତେଣୁ ରାଜାଙ୍କର ଚିନ୍ତା ଅଧିକ ବଢ଼ିଗଲା । ଶେଷରେ ସେ ନିରାଶ ହୋଇ ମନ୍ତ୍ରୀମାନଙ୍କୁ କହିଲେ, "ସାରା ରାଜ୍ୟରେ ଢେଣ୍ଡୁରା ପିଟି କହିଦିଅ ଯେ ଯିଏ ରାଜାଙ୍କୁ ଭଲ କରିବ ସେ ରାଜ୍ୟରୁ ଅଧେ ପାଇବ ।" ମନ୍ତ୍ରୀମାନେ ଭାବିଲେ ରାଜ୍ୟ ଲୋଭରେ ବହୁଲୋକ ଆସି ରାଜାଙ୍କୁ ହଇରାଣ କରିବେ । ତେଣୁ ସେମାନେ ଅନ୍ୟ ଏକ ସର୍ତ୍ତ ରଖିଲେ ଯେ ଚିକିତ୍ସାରେ ସଫଳ ହେଲେ ଅଧେ ରାଜ୍ୟ ପାଇବ । ନ ହେଲେ ପାଞ୍ଚବର୍ଷ ସଶ୍ରମ କାରାଦଣ୍ଡ ପାଇବ । ଏ

ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ସର୍ତ୍ତ ଶୁଣି କିଏ ବା ସାହସ କରିବ ଆସିବାକୁ । ଯିଏ ବା ଆସିଲା କାରାଦଣ୍ଡ ଭୋଗିଲା । ରାଜାଙ୍କର ଚିନ୍ତା ଆହୁରି ବଢ଼ିଲା । ଶେଷରେ ଦିନେ ଯୋଗାନନ୍ଦ ନାମକ ଜଣେ ସନ୍ନ୍ୟାସୀ ଏ ଖବର ଶୁଣି ଆସି ରାଜମହଲରେ ପହଞ୍ଚିଲେ ।

ସନ୍ନ୍ୟାସୀ ରାଜାଙ୍କୁ କହିଲେ, "ମହାରାଜ, ମୋ ଚିକିତ୍ସାରେ ଆପଣ ରହିଲେ ମାସକ ଭିତରେ ଆପଣଙ୍କ ପୃଥୁଳ ଶରୀର କ୍ରମେ ପତଳା ହୋଇଯିବ । କିନ୍ତୁ ମୁଁ ଯାହା କହିବି ଆପଣଙ୍କୁ କରିବାକୁ ହେବ ।"

"ଅବଶ୍ୟ କରାଯିବ ।" ରାଜା କହିଲେ ।

"କିନ୍ତୁ ଆପଣ କି ଔଷଧ ଦେଇ ଚିକିତ୍ସା କରୁଛନ୍ତି ସେସବୁ ଆମକୁ କହିବାକୁ ହେବ ନଚେତ୍ କି ବିଶ୍ୱାସରେ ଆମେ ଆପଣଙ୍କ ହାତରେ ରାଜାଙ୍କୁ ସଂପୂର୍ଣ୍ଣ ରୂପେ ସମର୍ପଣ କରିଦେବୁ ?" ମନ୍ତ୍ରୀମାନେ କହିଲେ ।

"ନିଶ୍ଚୟ କହିବି । କିନ୍ତୁ ଏବେ ନୁହେଁ । ଏହାଛଡ଼ା ମୋର ଆଉ ଗୋଟିଏ ସର୍ତ୍ତ ଅଛି । ମୁଁ ରାଜାଙ୍କର ଜାତକରୁ ଗ୍ରହନକ୍ଷତ୍ରଙ୍କର ସ୍ଥିତି ଓ ଶୁଭ ସମୟ ଦେଖି ଚିକିତ୍ସା ଆରମ୍ଭ କରିବି ।" ସନ୍ନ୍ୟାସୀ କହିଲେ ।

"ନିଶ୍ଚୟ । ଆପଣଙ୍କର ଯାହା ଇଚ୍ଛା ।" ମନ୍ତ୍ରୀମାନେ କହିଲେ । ତା'ପରେ ମନ୍ତ୍ରୀମାନେ ରାଜାଙ୍କର ଜାତକ ସନ୍ନ୍ୟାସୀଙ୍କୁ ଦେଲେ । ସନ୍ନ୍ୟାସୀ ଜାତକ ପରୀକ୍ଷା କରି କହିଲେ, "ରାଜାଙ୍କର ଚିକିତ୍ସା କରିବାର କୌଣସି ପ୍ରୟୋଜନ ନାହିଁ । କାରଣ ଆଜିଠାରୁ ଏକମାସ ପରେ ତାଙ୍କର ମୃତ୍ୟୁଯୋଗ ଅଛି ।"

ମନ୍ତ୍ରୀମାନେ କହିଲେ, "ମହାଶୟ, ଆପଣଙ୍କର ବୋଧହୁଏ ଗ୍ରହନକ୍ଷତ୍ର ସଂପର୍କରେ କୌଣସି ଜ୍ଞାନ ନାହିଁ । କାହିଁ ଏପର୍ଯ୍ୟନ୍ତ କୌଣସି ଜ୍ୟୋତିଷ ତ ଏପରି କଥା କହି ନାହାନ୍ତି !"

"ଦେଖନ୍ତୁ, ଭବିଷ୍ୟତ ବିଷୟରେ ସଂପୂର୍ଣ୍ଣ ନିଶ୍ଚିତ କେହି ନ ହେଲେ ମଧ୍ୟ ଯାହା ଘଟିବାର ଅଛି ଘଟିବ । ଯାହା ହେଉ ଆପଣମାନଙ୍କର ବିଶ୍ୱାସ ନ ହେଉଛି ତ ମୋତେ ମାସେ ପର୍ଯ୍ୟନ୍ତ କାରାଗାରରେ ରଖନ୍ତୁ ।" ସନ୍ନ୍ୟାସୀ କହିଲେ ।

ମନ୍ତ୍ରୀମାନେ ସନ୍ୟାସୀଙ୍କ କଥା ଅନୁସାରେ ତାଙ୍କୁ କାରାଗାରରେ ରଖିଲେ । ତାଙ୍କର ସେବା

ପାଇଁ ଲୋକ ରଖାଗଲା । ଏଣେ ସନ୍ନ୍ୟାସୀଙ୍କ କଥା ଉପରେ ରାଜାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ତେଣୁ ତାଙ୍କ ମନର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଲା ।

ଏବେ ରାଜାଙ୍କ ମନରେ ସେଇ ଗୋଟିଏ ଚିନ୍ତା । ମୃତ୍ୟୁ ଏତେ ଶୀଘ୍ର ଆସିଯିବ ଅଥଚ ସିଏ କିଛି କରିପାରିଲେ ନାହିଁ, ଭୋଗବିଳାସରେ ରହି ସମୟ ବିତାଇଲେ । ଏହିପରି ନାନାଦି ଚିନ୍ତାରେ ସେ ଅସ୍ଥିର ହୋଇ ପଡ଼ିଲେ । ସେ ଚିନ୍ତା ଏକ ମାନସିକ ବ୍ୟାଧିର ରୂପ ନେଲା । ନା ସେ ଖାଇ ପାରିଲେ ନା ଶୋଇ ପାରିଲେ । ଶୟନ ଭୋଜନ ବିନା ରାଜା କ୍ରମେ ଶଯ୍ୟାଶାୟୀ ହୋଇ ରହିଲେ । ମନ୍ତ୍ରୀମାନେ ଯେତେ ବୁଝାଇଲେ ମଧ୍ୟ ରାଜା କିଛି ବୁଝିଲେ ନାହିଁ । କ୍ରମେ ସେ ଅନ୍ୟମାନଙ୍କ ସହିତ କଥା କହିବା ମଧ୍ୟ ବନ୍ଦ କରିଦେଲେ । ଏହିପରି ଭାବରେ ଅଣତିରିଶ ଦିନ କଟିଗଲା । ତିରିଶ ଦିନ ସଂଧ୍ୟାବେଳକୁ ରାଜା କ୍ରମେ ପ୍ରଫୁଲ୍ଲ ଦେଖାଗଲେ । ତିରିଶ ଦିନ କଟିଯିବା ପରେ ପରଦିନ ରାଜା ଯେପରି ମନ୍ତ୍ର ଦ୍ୱାରା କିଛି ଶକ୍ତି ପାଇଲେ । ସେ ସିଂହ ପରି ଗର୍ଜି ଉଠି ମନ୍ତ୍ରୀମାନଙ୍କୁ କହିଲେ, "କାହାନ୍ତି ସେ ଦୁଷ୍ଟ ସନ୍ନ୍ୟାସୀ? ତାଙ୍କୁ କାରାଗାରରୁ ଏହି ମୁହୂର୍ତ୍ତରେ ନେଇ ଆସ । ତାଙ୍କୁ ଫାଶୀ ଦିଆଯିବ ।"

ସନ୍ନ୍ୟାସୀଙ୍କୁ କାରାଗାରରୁ ମନ୍ତ୍ରୀମାନେ ନେଇ ଆସିଲେ । ତାଙ୍କୁ ଦେଖୁ ଦେଖୁ ରାଜା ଗର୍ଜ୍ଜନ କରି କହିଲେ, "ହେ ମୂର୍ଖ ସନ୍ନ୍ୟାସୀ, ତୁମେ ମିଥ୍ୟା ଭବିଷ୍ୟତ୍ ବାଣୀ କରି ମୋତେ



ଅପାର କଷ୍ଟ ଦେଇଛ । ଏବେ ତୁମେ ଦଣ୍ଡ ପାଇଲେହିଁ ମୋର ଯନ୍ତ୍ରଣା ସବୁ ମୁଁ ଭୁଲିଯିବି ।"

"ଦଣ୍ଡ ? ମୁଁ ତ ଖୁସି ହୋଇ ଆସିଛି ପୁରସ୍କାର ନେବାକୁ ।" ସନ୍ନ୍ୟାସୀ କହିଲେ ।

"ଓଃ, ପୁରସ୍କାର ? ମୋର ମୃତ୍ୟୁ ହେବାର ଭବିଷ୍ୟତ୍‌ବାଣୀ କରି ମୋତେ କଷ୍ଟ ଦେଇ ପୁଣି ପୁରସ୍କାର ଗୃହୁଁଛ ?" ରାଜା କହିଲେ ।

"ମହାରାଜ, ଆପଣ ଭୁଲିଯା'ନ୍ତୁ ନାହିଁ ଯେ ମୁଁ ଆପଣଙ୍କର ଚିକିତ୍ସା କରିବାକୁ ଏଠାକୁ ଆସିଥିଲି, ଜାତକ ଦେଖିବାକୁ ନୁହେଁ ।" ମୁଁ ଚିକିତ୍ସା କରିଛି ଓ ପୂର୍ଣ୍ଣ ସାଫଲ୍ୟ ଅର୍ଜନ କରିଛି । ଦର୍ପଣ ପାଖକୁ ଯାଇ ଦେଖନ୍ତୁ, ଆପଣଙ୍କ ଶରୀରର ସବୁ ଚର୍ବି ମିଳାଇ ଯାଇଛି । ଆପଣ ବସିଲେ ଉଠିପାରୁ ନଥିଲେ । ଏବେ ତ ସିଂହ ପରି ଲୁଦାମାରି ଗର୍ଜନ କରି ମୋତେ ଦଣ୍ଡ ଦେବାକୁ ପ୍ରସ୍ତୁତ ହେଉଛନ୍ତି । ଏ ପରିବର୍ତ୍ତନ ମୋ ଚିକିତ୍ସା ଯୋଗୁ ହୋଇ ନାହିଁ ?" ସନ୍ନ୍ୟାସୀ ନିର୍ଭୟରେ କହିଲେ ।

ଏବେ ସନ୍ନ୍ୟାସୀଙ୍କ କଥାର ଅର୍ଥ ସମ୍ରାଟ ଉପଲବ୍‌ଧି କରିପାରିଲେ । ରାଜା ଦର୍ପଣ ଆଗରେ ଠିଆ ହୋଇ ଦେଖିଲେ ସେ କେତେ ଯୁବକ ପରି ଦେଖା ଯାଉଛନ୍ତି । ରାଜା ନିଜର ଭୁଲ ବୁଝିପାରିଲେ ଓ କ୍ଷମା ମାଗିଲେ । ତା'ପରେ ରାଜା ମନ୍ତ୍ରୀମାନଙ୍କୁ ଆଦେଶ ଦେଲେ ସନ୍ନ୍ୟାସୀଙ୍କୁ ରାଜ୍ୟରୁ ଅଧେ ଦେବାକୁ ।

କିନ୍ତୁ ସନ୍ନ୍ୟାସୀ କହିଲେ, "ମହାରାଜ, ମୁଁ ସନ୍ନ୍ୟାସୀ ଲୋକ, ରାଜ୍ୟ ନେଇ କ'ଣ କରିବି ! ଆପଣ ସୁଖରେ ରହନ୍ତୁ ଓ ପ୍ରଜାମାନଙ୍କ ମଙ୍ଗଳ ପାଇଁ କାମ କରନ୍ତୁ ସେଇ ମୋର ପୁରସ୍କାର ।"

ରାଜା ସନ୍ନ୍ୟାସୀଙ୍କୁ ପ୍ରଣାମ କରି କହିଲେ, "ମହାଶୟ, କୃପା କରି ମଝିରେ ମଝିରେ ରାଜଭବନକୁ ଆସି ମୋତେ ସଦ୍‌ବୁଦ୍ଧି ଦେଉଥିବେ । ମୋତେ ନିଜର ଶିଷ୍ୟ ପରି ମାନିବେ ।"

ସନ୍ନ୍ୟାସୀ ରାଜାଙ୍କୁ ଆଶିର୍ବାଦ ଦେଇ ବିଦାୟ ନେଲେ ।





# ବିଚିତ୍ର ସ୍ୱପ୍ନ

ଅନେକ ଦିନ ପୂର୍ବେ ତୁର୍କୀ ସହରରେ ବାବର ନାମକ ଜଣେ ଗରିବ ଲୋକ ଥାଏ। କିନ୍ତୁ ତା'ର ମନ ନାନା ଉଚ୍ଚ ଆକାଂକ୍ଷାରେ ପୂର୍ଣ୍ଣ ଥାଏ। ସେସବୁ ବେଳେ ବେଳେ ସେ ସ୍ୱପ୍ନରେ ଦେଖେ।

ଦିନେ ବାବର ଗୋଟିଏ ଭୋଜନାଳୟର ଏକ କୋଣରେ ଥିବା ଚୌକି ଉପରେ ବସି ନାନା କଥା ଭାବୁଥାଏ। ସହରର ବଡ଼ ବଡ଼ ଧନୀମାନଙ୍କ ପାଇଁ ଥାଏ ସ୍ନାନାଗାର। ସେଠାରେ ସେବକମାନେ ମାଲିସ୍ କରି ଦିଅନ୍ତି ଓ ନାନା ପ୍ରକାର ସେବା କରନ୍ତି। ବାବରର ମଧ୍ୟ ଇଚ୍ଛା ହେଲା ଥରେ ସେଠାକୁ ଯା'ନ୍ତା।

କ୍ରମେ ସେ ସେଠାକୁ ଯିବାର କଳ୍ପନା କଲା। ତା'ପରେ ସେ ଦେଖୁଛି ଯେ ସେ ନିଜେ ଯାଇ ସେଠାରେ ପହଞ୍ଚିଛି। ଦୂରରୁ ଦେଖିଲା ଜଣେ ବ୍ୟକ୍ତି ଠିକ୍ ତା'ରି ପରି ବସି ମାଲିସ୍ ହେଉଛି ଓ ସର୍ବତ ଖାଉଛି। ବାବର ଲୁଚିକରି ବସିଥାଏ। ଧନୀ ବ୍ୟକ୍ତିର ଚାକରମାନେ ଚାଲିଯିବା ପରେ ସୁଯୋଗ ଦେଖି ବାବର ତା' ପାଖକୁ ଗଲା। ସେ ବଚାର ତଉଲିଆ ପିନ୍ଧି ବସିଥିଲା। ବାବର ତାକୁ ଜବରଦସ୍ତି ଧରି ପାଣି ଟାଙ୍କିରେ ପକାଇ ଦେଇ ତା' ତଉଲିଆକୁ ନିଜେ ପିନ୍ଧି ତା' ଚଉକି ଉପରେ ବସି ପଡ଼ିଲା।

କିଛି ସମୟ ପରେ ସେବକମାନେ ଲେଉଟି ଆସିଲେ। ସେମାନେ ବହୁତ ଯତ୍ନର ସହିତ ବାବରକୁ ସ୍ନାନ କରାଇଲେ। ତା'ପରେ ବହୁତ ଦାମିକା ପୋଷାକ ପିନ୍ଧାଇ ବାହାରକୁ ନେଇ ଆସିଲେ। ତା' ହାତରେ ଧନୀ ବାବରର ସୁନା ମୋହର ଭରା ଥଳିଟି ଧରାଇ ଦେଲେ। ସେଥିରୁ ସେ ତିନୋଟି ମୋହର ସ୍ନାନାଗାରର ସେବକମାନଙ୍କୁ ଦେଲା।

ତୁର୍କୀ ଲୋକକଥା

ବାହାରକୁ ଆସିବା ମାତ୍ରେ ତା'ର ନିଜ ସେବକମାନେ ତାକୁ ଘୋଡ଼ା ଉପରେ ବସିବାକୁ କହିଲେ । ତା'କୁ ବହୁତ ଡର ମାଡ଼ିଲା । ତଥାପି ଧରା ପଡିଯିବା ଭୟରେ କିଛି ନ କହି ଘୋଡା ଉପରେ ବସିଲା । ଘୋଡ଼ା ନିଜର ପରିଚିତ ରାସ୍ତାରେ ଚାଲିଥାଏ ।

ଏକ ବିରାଟ କୋଠା ପାଖରେ ଘୋଡ଼ା ଠିଆ ହେଲା । ସେବକମାନେ ଦୌଡ଼ି ଆସି ତାକୁ ଘୋଡ଼ା ପିଠିରୁ ଓହ୍ଲାଇବାକୁ ସାହାଯ୍ୟ କଲେ । ତା'ପରେ ସେବକମାନଙ୍କ ଦ୍ୱାରା ପରି-ବେଷ୍ଟିତ ହୋଇ ମହଲ ଭିତରେ ଚାଲିଥାଏ । ଜଣେ ସେବକ ପଚାରିଲା, "ମାଲିକ୍, ଆପଣ ନିଜ ମହଲରେ ରହିବେ ନା ମାଲିକାଣୀଙ୍କ ମହଲକୁ ଯିବେ ?"

"ମୁଁ ମୋ ମହଲରେ ଏବେ ରହିବି" ବାବର କହିଲା । ତା'ପରେ ତାକୁ ସେମା ଏକ ସୁସଜ୍ଜିତ ବିରାଟ ଶୟନକକ୍ଷ ମଧ୍ ନେଇଗଲେ । କିଛି ସମୟ ପରେ ଦୁଇଜ ସେବକ ଆସି ତାକୁ ପଚାରିଲେ, "ମାଲିକ ଆପଣ ଏଇଠି ଭୋଜନ କରିବେ ନା ମାଲି କାଣୀଙ୍କ ସହିତ ଭୋଜନ କରିବେ ?"

"ଆଉ ଏଇଠାକୁ ଖାଦ୍ୟ ନେଇ ଆସ ।" ବାବର କହିଲା ।

ଖୁବ୍ ସୁନ୍ଦର ଖାଦ୍ୟ ସାମଗ୍ରୀ ସବୁ ଅ ହେଲା । ବାବର ସେଥିରୁ ମନ ଇଚ୍ଛା ଖାଇଲା । ଖାଇବା ଶେଷ ହେବା ପରେ ଜଣେ ସେବକ ପୁଣି ପଚାରିଲା, "ମାଲିକ୍, ଆପଣ ଆସିବା ପରେ ବହୁତ ସମୟ ବିତିଗଲାଣି । ତେଣେ



ଗ୍ରାଲ୍‌କାଣୀ ଅପେକ୍ଷା କରିଥିବେ । ଆପଣ ଏବେ ସେଠାକୁ ଯିବେ ?"

"ଠିକ୍ ଅଛି । ମୁଁ ଏବେହିଁ ଯିବ ।" ବାବର କହିଲା ।

ତା'ପରେ ସେବକ ଚାଲିଗଲା । ବାବର କୁଆଡ଼େ ଯିବ ଭାବି ଭାବି ସ୍ଥିର କରି ନ ପାରି ଗୋଟିଏ ଭୁଇଁଆ ଦ୍ୱାର ଖୋଲିବା ମାତ୍ରେ ଅନ୍ଦର ମହଲକୁ ଥିବା ରାସ୍ତା ପାଇଗଲା । ତା'ପରେ ସେ ଦେଖିଲା ଧନୀ ବାବରର ସ୍ତ୍ରୀ ସୁନ୍ଦରୀ ବେଗମ୍ ନିଜେ ତା'କୁ ସ୍ୱାଗତ କରିବାକୁ ଅପେକ୍ଷା କରିଛନ୍ତି ।

ସେ ବାବରକୁ ଦେଖିବା ମାତ୍ରେ ତା'ର ହାତ ଧରି ନିଜର ସୁସଜ୍ଜିତ କକ୍ଷକୁ ନେଇଗଲେ ଓ ନିଜ ପାଖରେ ବସାଇ କଥା କହିଲେ । ବାବର ତ ଭୟରେ କାଠ ହୋଇଗଲାଣି । କ'ଣ କରିବ ? ବେଗମ୍ କହିଲେ, "ଆଜି ତମକୁ ପ୍ରଥମେ ମୁଁ ଗୋଟିଏ ପ୍ରଶ୍ନ କରିବି । କାଲି ମୋର ବାଲ୍ୟସଙ୍ଗିନୀ ନଜମା ଆସିଥିଲା । ଆମେ କଥା କହୁ କହୁ ସେ ତୁମର ପୁଅ ନାମ ପଚାରିଲା । ମୁଁ ତ କହିପାରିଲି ନାହିଁ କାରଣ ମନେ ପଡ଼ିଲା ନାହିଁ । ତମେ ଆଜି ମୋତେ ତୁମର ପୁଅ ନାମଟି କୁହ ।"

ବାବରର ମଥା ଘୂରିଗଲା । ଏବେ କରେ କ'ଣ ? ବୁଦ୍ଧି ପ୍ରୟୋଗ କରି କହିଲା, "ଆରେ ଆମେ ଏତେଦିନ ହେଲା ଘରସଂସାର କରିବା ପରେ ତମେ ମୋର ନାମ ଭୁଲି ଯାଉଛ ?"

ବେଗମ୍ କିନ୍ତୁ ଜିଦ୍ କରି କହିଲେ, "ନା, ଆଜି ତୁମକୁ ପୁଅ ନାମଟି କହିବାକୁହିଁ ପଡ଼ିବ ।"



କିଂକର୍ତ୍ତବ୍ୟବିମୂଢ଼ ବାବର ବିଚରା ଏକ ମନଗଢ଼ା ମିଛ ନାମ କହିଲା ଓ ବେଗମ୍‌ଙ୍କ ପାଖରେ ଧରା ପଡ଼ିଲା । ସେ ଭୟରେ ସବୁକଥା ସତ ସତ ବେଗମ୍‌ଙ୍କୁ କହିଦେଲା । ଶେଷରେ ସେ ଅନୁରୋଧ କରି କହିଲା, "ତମେ ମୋତେ କ୍ଷମା କର ।"

"ମୁଁ ତ ତୁମକୁ କ୍ଷମା କରିଦେବି । କିନ୍ତୁ ମୋର ସ୍ୱାମୀ ଯେ ଖୋଦ୍ ବାଦ୍‌ଶାହଙ୍କର ମୌଲବୀ । ସେ ବାଦଶାହଙ୍କୁ ସବୁଦିନେ ଧର୍ମଶାସ୍ତ୍ର ପଢ଼ି ଶୁଣାନ୍ତି । ସେଠାକୁ ଯାଇ ତମେ ତ ଧରା ପଡ଼ିବ ।" ବେଗମ୍ କହିଲେ ।

ବେଗମ୍ କଥା ନ ସରୁଣୁହିଁ ରାଜପ୍ରାସାଦରୁ ଲୋକ ଆସିଛି ମୌଲବୀଙ୍କୁ ଡାକି ନେବାକୁ । ବାବର ଭୟରେ ଥରିଲା ଓ ବେଗମ୍‌ଙ୍କୁ କହିଲା, "ତୁମେ କୁହ ଏବେ ମୁଁ କ'ଣ କରିବି ।"

ବେଗମ୍ କହିଲେ, "ତୁମେ ସେଠାକୁ ଯାଇ ଦେଖିବ ବାଦଶାହଙ୍କ ସାମନାରେ ଦୁଇଟି ଆସନ । ଗୋଟିକ ଉପରେ ମୋତିମାଳା ଓ ଗୋଟିକ ଉପରେ ସୁନାହା[ର] ଥିବ । ତୁମେ ମୋତିର ହାରଟି ନି[ଜ] ଗଳାରେ ପିନ୍ଧିବ ଓ ସୁନାହାରକୁ ହାତରେ ଧରି କହିବ, "ଏ ମୋର ମିତ୍ର" ଏ[ବଂ] ତା'ପରେ ଧର୍ମଚର୍ଚ୍ଚା ଆରମ୍ଭ କରିବ ।"

ବାଦଶାହ ପଠାଇଥିବା ଲୋକଙ୍କ ସହି[ତ] ଦରିଦ୍ର ବାବର ଯାଇ ବେଗମ୍ କହିବା ଅନୁସାରେ ସବୁ କାମ କଲା ହେଲେ ଭୟରେ ଥରି ଥରି ଦେହରୁ ତା'ର ଝାଳ ଗମ୍ ଗମ୍ ବୋହିଯାଉଥିଲା । ଭୟରେ ଥରିବା ଯୋଗୁ ଦରିଦ୍ର ବାବରର ନିଦ ଭାଙ୍ଗିଗଲା । ସେ ବୁଝିପାରିଲା ସମଗ୍ର ଘଟଣାଟି ତା'ର ଇଚ୍ଛା ପୂର୍ଣ୍ଣ କରିବାର ଏକ ସ୍ୱପ୍ନ ମାତ୍ର । ଏବେ ସ୍ୱପ୍ନରୁ ଉଠିବା ପରେ ତା'ର ଆଉ ଭୟ ନଥିଲା । ତାକୁ ଏତେ ଶାନ୍ତି ଲାଗିଲା ଯେ ଆନନ୍ଦରେ ତା' ଆଖିରୁ ଅଶ୍ରୁ ବହିବାକୁ ଲାଗିଲା । ଭୟଙ୍କର ବିପଦର ଅନୁଭୂତିରୁ ହଠାତ୍ ମୁକ୍ତି ମିଳିଲା ।



# ଅଧା ମୂଲ୍ୟ

ଜଗୁଦାସ ରାମପୁର ଗ୍ରାମର ଜଣେ ଧନୀ ଚାଷୀ । ଚାଷ ଛଡ଼ା ଦୋକାନଟିଏ ଥାଏ ସେଥିରୁ ମଧ୍ୟ ବହୁତ ଟଙ୍କା ରୋଜଗାର ହୁଏ । କିନ୍ତୁ ସେ ଟିକିଏ ଲୋଭୀ ପ୍ରକୃତିର ବ୍ୟକ୍ତି । ଧାନ ଅମଳ ସମୟରେ ସେ ପତ୍ନୀକୁ ଦୋକାନ ଜଗାଇ ଦେଇ ନିଜେ ଜମିପାଖରେ ଥାଏ ।

ଧାନ ଅମଳ ପରେ ସବୁ ଚାଷୀମାନେ ଗରିବ ଲୋକଙ୍କୁ କିଛି ନା କିଛି ଦାନ ଦେଇଥାନ୍ତି । ତେବେ ଲୋଭୀ ଜଗୁଦାସର ପାଖକୁ କେହି ଯାଏ ନାହିଁ । ଥରେ ଜଗୁଦାସର ମନ ହେଲା ଏଥର କିଛି ଦାନ ଖଇରାତ କରିଲେ ଯଶ ମିଳିବ । ତେଣୁ ସେ କେତେକ ପିଲାଙ୍କୁ ଗ୍ରାମରୁ ଡାକିଆଣି କିଛି କିଛି ଧାନ ବାଣ୍ଟିଲା । କିନ୍ତୁ ସେଥିରେ ଧାନ ଥିଲା ଚାରିଭାଗରୁ ଭାଗେ ଆଉ ତିନିଭାଗ ଥିଲା ଅଗାଡ଼ି ।

ସେଇ ଗାଁର ଧରମ ଦାସ ଦୂରରୁ ଏସବୁ ଦେଖି ପିଲାଙ୍କୁ ପାଖକୁ ଡାକି ଦେଖିଲା ଅଗାଡ଼ି ମିଶା ଧାନ । ପିଲାଙ୍କୁ ସେ ଚୁପ୍‌ଚାପ୍ କିଛି କହି ବିଦା କଲା ।

କିଛି ସମୟ ପରେ ଜଗୁଦାସ ଧାନବସ୍ତା ସବୁ କ୍ଷେତରୁ ଘରକୁ ଆଣି ଦେଖିଲା ଘରେ ବହୁତ ଧାନ ଗଦା ହୋଇଛି । ସେ ଆଶ୍ଚର୍ଯ୍ୟ ହେଲା । ଏତିକିବେଳେ ତା' ସ୍ତ୍ରୀ ବହୁତ ଖୁସିରେ ଆସି କହିଲା, "ଆହେ, ଶୁଣ, ଆଜି ମୁଁ ଅଧା ଦାମରେ ବହୁତ ଧାନ କିଣିଛି । କେତେ ଗୁଡ଼ିଏ ପିଲା ଧାନ ଅଧା ଦାମରେ ବିକୁଥିଲେ କହିଲେ କିଏ ଧର୍ମାତ୍ମା ତାଙ୍କୁ ଦାନ ଦେଇଛି । ଅଧା ଦାମରେ ମିଳିବାରୁ ମୁଁ ସବୁ କିଣିନେଲି ।"

ଜଗୁଦାସ ଧାନଗଦା ଦେଖି ନିଜର ଅଗାଡ଼ି ମିଶା ଧାନ ଚିହ୍ନି ପାରିଲେ ଓ ନିଜ ପ୍ରତିଷ୍ଠା ବିଷୟରେ ଚୁପ୍ ରହିବା ଭଲ ଭାବି ସ୍ତ୍ରୀକୁ କିଛି ଉତ୍ତର ଦେଲେ ନାହିଁ ।





# କୁଶଳ ବୁଦ୍ଧି

ପ୍ରତ୍ୟେକ ମଣିଷର ସାଧାରଣ ଜୀବନ କଟାଇବା ପାଇଁ ଯଥେଷ୍ଟ ବୁଦ୍ଧି ଅଛି । କିନ୍ତୁ କୁଶଳ ବୁଦ୍ଧି ଅନ୍ୟ ଏକ ବିଭବ ଯାହା ଖୁବ୍ କମ୍ ବ୍ୟକ୍ତିଙ୍କର ଥାଏ । ଏହି କୁଶଳ ବୁଦ୍ଧି ସାହାଯ୍ୟରେ ମଣିଷ ଅଳ୍ପ ସମୟରେ, ଅଳ୍ପ ପରିଶ୍ରମରେ ଓ ଅନାୟାସରେ ଅନେକ କିଛି ହାସଲ କରିପାରେ । ସେହିପରି ଜଣେ ବ୍ୟକ୍ତି ହେଲେ ବିଜୟପୁର ଗ୍ରାମର ରାମପ୍ରସାଦ । ସେ ବିବେକ୍‌ବାନ୍, ସ୍ଥିରବୁଦ୍ଧି ସମ୍ପନ୍ନ ଓ ସଂସାରର ସମସ୍ୟା ସମାଧାନ କରିବାରେ ବିଚକ୍ଷଣ । ତେଣୁ ଗ୍ରାମରେ କାହାର କିଛି ସମସ୍ୟା ହେଲେ ସେମାନେ ତାଙ୍କ ପାଖକୁହିଁ ଆସନ୍ତି ।

ସେଇ ଗାଁରେ ଭୋଲା ନାମରେ ଜଣେ ଗରିବ କୃଷୀ ଥାଏ । ଦିନେ ସେ ରାମପ୍ରସାଦଙ୍କ ପାଖକୁ ଆସି କହିଲା, "ମହାଶୟ, ଆମ ଘରଟି ଚଳିବାକୁ ଛୋଟ, ପରିବାରର ସଂଖ୍ୟା କ୍ରମେ ବଢୁଛି । ଶୋଇବା ରହିବା ପାଇଁ ବଖରାଏ ମାତ୍ର ଘର । ହାତରେ ପଇସା ନାହିଁ ଯେ ମୁଁ ନୂଆ ଘରଟିଏ କରିବି । ଏ କ୍ଷେତ୍ରରେ କ'ଣ କରାଯାଇ ପାରେ ଆପଣ ମୋତେ ବୁଦ୍ଧି ଦିଅନ୍ତୁ ।"

ରାମବାବୁ କହିଲେ, "ଭୋଲା, ତୁମ ଘରେ ତୁମେ ଛେଳି ଓ କୁକୁଡ଼ା ବି ରଖିଛ ନା ?"

"ଆଜ୍ଞା, ବହୁତ ଅଛନ୍ତି, ବତକ, କୁକୁର, ବିଲେଇ, ଗାଈ ମଧ୍ୟ ଅଛନ୍ତି ।" ଭୋଲା କହିଲା ।

"ଦେଖ ଭୋଲା, ଆଜଠାରୁ ଗୋଟିଏ ଛେଳି ଓ ତା'ର ଛୁଆଙ୍କୁ ତୁମ ଶୋଇବା ଘରେ ନେଇ ବାନ୍ଧିବ । ଦୁଇଦିନ ପରେ ମୋତେ ଆସି ଖବର ଦେବ ।" ରାମପ୍ରସାଦ କହିଲେ ।

କାଶୀନାଥ

ଭୋଲା ଖୁସି ହୋଇ ଘରକୁ ଯାଇ ସେଇଆ କଲା । ଚହ୍ଲାଣ ଘର ଭିତରେ ଜାଗା ଆହୁରି କମ୍ ହୋଇଗଲା । ଦୁଇଦିନ କଷ୍ଟ କରି ଚାଲିଲା ପରେ ଯାଇ ରାମପ୍ରସାଦଙ୍କୁ ଦେଖା କରି ତା'ର କଷ୍ଟ କହିଲା । ରାମବାବୁ କହିଲେ, "ପ୍ରଥମେ କଷ୍ଟ ହେବ, ପରେ ସବୁ ଠିକ୍ ହୋଇଯିବ । ଏବେ ଆଉ ଦୁଇହଳ ଛେଳି ଘର ଭିତରେ ରଖିବ । ପାଞ୍ଚଦିନ ପରେ ଆସି ମୋତେ ଜଣାଇବ ।"

ପାଞ୍ଚଦିନ ପରେ ଭୋଲା ରାମପ୍ରସାଦଙ୍କୁ ପୁଣି ଦେଖା କରି କହିଲା, "ମହାଶୟ, ଆପଣଙ୍କ କଥା ଅନୁସାରେ ତ ଚଳୁଛୁ ହେଲେ ଏବେ ଶୋଇବା ବଖରାଟିରେ ଆଉ ହଲଚଲ ହେବାକୁ ଜାଗା ନାହିଁ ।"

ରାମପ୍ରସାଦ ଅଳ୍ପ ଅଳ୍ପ ହସି କହିଲେ, "ଭୋଲା, ଏବେ ଆଜିଠାରୁ ଘରେ ଥିବା ଛେଳିମାନଙ୍କ ଭିତରୁ ଦୁଇଟିଙ୍କୁ ବାହାରେ ବାନ୍ଧିବ ଓ କାଲି ଆସି ମୋତେ କହିବ କ'ଣ ହେଲା ।"

ଦୁଇଦିନ ପରେ ଭୋଲା ଖୁସି ହୋଇ ଆସିବାର ଦେଖି ରାମପ୍ରସାଦ କହିଲେ, "ଭୋଲା, ଏବେ ତୁମ ଘର ଟିକିଏ ବଡ଼ ଲାଗୁଛି ନା ?"

"ଆଜ୍ଞା, ହଁ, ମଝିରେ ତ ନିଶ୍ୱାସ ମାରିବାକୁ କଷ୍ଟ ହେଉଥିଲା । ଏବେ ଟିକିଏ ଖୋଲା ଲାଗୁଛି ।" ଭୋଲା କହିଲା ।

"ତେବେ, ଆଜିଠାରୁ ଗୋଟେ ଗୋଟେ ଛେଳି ଓ ତାଙ୍କ ମା'ଙ୍କୁ ମଧ୍ୟ ବାହାରେ ବାନ୍ଧିବ ।



ଦୁଇଦିନ ପରେ ଆସି ମୋତେ ଖବର ଦେବ ବୁଝିଲ ?” ରାମପ୍ରସାଦ କହିଲେ ।

ଦୁଇଦିନ ପରେ ଭୋଲାର ହସଖୁସିରେ ଭରା ଚେହେରା ଦେଖି ରାମପ୍ରସାଦ ପଚାରିଲେ, “ଏବେ ତୁମ ଘରର ଅବସ୍ଥା କପରି ?”

“ବାବୁ ମହାଶୟ, ଆପଣ ମୋର ବହୁତ ଉପକାର କରିଛନ୍ତି । ଏବେ ମୋ ଘର ବହୁତ ଖୋଲା ଓ ବଡ଼ ଲାଗୁଛି । ମୋ ଘରର ଲୋକମାନେ ମଧ୍ୟ ଖୁସି ।” ଭୋଲା କହିଲା ଓ ନମସ୍କାର କରି ଚାଲିଗଲା ।

କିଛିଦିନ ଆଗରୁ କୈଳାସ ନାମକ ଏକ ବୁଦ୍ଧିମାନ ଯୁବକ ରାମପ୍ରସାଦଙ୍କ ଘରେ କାମ କରିବାକୁ ରହିଥାଏ । ସେ ପ୍ରଥମରୁହିଁ ଭୋଲା ଓ ରାମପ୍ରସାଦଙ୍କ କଥାବାର୍ତ୍ତା ମନଦେଇ ଶୁଣୁଥାଏ କିନ୍ତୁ ସେ ବୁଝିପାରିଲା ନାହିଁ ଯେ ଛୋଟ ଘର କପରି ବଡ଼ ହୋଇଗଲା । ସେ ଆଶ୍ଚର୍ଯ୍ୟ ହୋଇ ରାମପ୍ରସାଦଙ୍କୁ ପଚାରିଲା, “ବାବୁ ଭୋଲାର ନୂଆ ଘର ତ ତିଆରି ହୋଇନାହିଁ । ଯେତିକି ଜାଗା ସେତିକି, ଆଉ କେବଳ କଥାବାର୍ତ୍ତା ଆପଣ ତାକୁ କ’ଣ ବୁଝାଇଲେ ଯେ ତା’ ଛୋଟ ଘର ବଡ଼ ହୋଇଗଲା ଓ ତା’ ସମସ୍ୟା ସମାଧାନ ହୋଇଗଲା ?”

ରାମପ୍ରସାଦ କହିଲେ, “ଭୋଲା ଜଣେ ସାଧାରଣ ମଣିଷ, ତା’ର ବୁଦ୍ଧି ଅଛି ହେଲେ କୁଶଳ ବୁଦ୍ଧି ନାହିଁ । ସେ କହିଲା ବଡ଼ ଘର ତିଆରି କରିପାରିବ ନାହିଁ । ଅଥଚ ସେ ଘରକୁ ନେଇ ସନ୍ତୁଷ୍ଟ ହେବ । ତେଣୁ ମୁଁ ଚେଷ୍ଟାକଲି ତା’ର ମନୋବୃତ୍ତି ବଦଳାଇବାକୁ । ଅଧିକ ପଶୁ ଘର ଭିତରେ ରଖିବାରୁ ଘର ଖୁବ୍ ଛୋଟ ଲାଗିଲା । ସେତେବେଳେ ସମସ୍ତେ କଷ୍ଟେମଷ୍ଟେ ସେଇ ଘରେ ଚଳିଲେ । କଣ୍ଠାଗ୍ର ବନ୍ଦ ହୋଇଗଲା ପରି ଲାଗିଲା । ପୁଣି ପଶୁମାନେ ବାହାରିଗଲାରୁ ତାକୁ ଖୋଲା ଓ ବଡ଼ ଲାଗିଲା । ସେତେବେଳେ ତା’ର ମନେହେଲା ଆଃ କି ଖୋଲା । ବାସ୍ ମନୋବୃତ୍ତି ବଦଳିଗଲା । ବାହାରେ ଘର ଯାହା ଥିଲା ସେଇଆ ।”



## ବିଛାର ପାଦ



ବିଛା ଓ ତେଲୁଣୀ
ପୋକଙ୍କୁ ଇଂଲିଶ୍ ଭାଷାରେ
ସେଣ୍ଟିପେଡ୍ କହନ୍ତି,
ଅର୍ଥାତ୍ ଶତେପାଦ ଥିବା
ପୋକ । କିନ୍ତୁ ଇଉରୋପରେ
ଏକପ୍ରକାର ବିଛା ଅଛନ୍ତି ଯେଉଁମାନଙ୍କର ପାଦର
ସଂଖ୍ୟା ୧୭୩ ରୁ ୧୭୭ ଯୋଡ଼ା ପର୍ଯ୍ୟନ୍ତ ହୋଇଥାଏ ।



## ବୃହତ୍ତମ ବରଫ ପାହାଡ଼

୧୯୫୬ ରେ ପ୍ରଶାନ୍ତ ମହାସାଗରର ଦକ୍ଷିଣ ପ୍ରାନ୍ତରେ ବିଶ୍ୱର ବୃହତ୍ତମ ବରଫ ପାହାଡ଼ର ସନ୍ଧାନ ମିଳିଥିଲା । ଏହାର କ୍ଷେତ୍ରଫଳ ୧୨୦୦୦ ବର୍ଗମାଇଲ୍ । ୧୯୫୮ ରେ ଗ୍ରୀନ୍‌ଲାଣ୍ଡର ଅପର ପାର୍ଶ୍ୱରେ ଥିବା ଏକ ବରଫ ପାହାଡର ସନ୍ଧାନ ମିଳିଥିଲା ଯାହାର ଉଚ୍ଚତା ୫୫୦ ଫୁଟ୍, ପୃଥିବୀର ଉଚ୍ଚତମ ବରଫ ପାହାଡ଼ ।

## ହମିଙ୍ଗ୍ ବାର୍ଡ



ଦକ୍ଷିଣ ଆମେରିକାରେ ଥିବା ହମିଙ୍ଗ୍ ବାର୍ଡ ନାମକ ଏକ ପ୍ରକାର ପକ୍ଷୀ ପ୍ରତି ମିନିଟ୍‌ରେ ପ୍ରାୟ ୮୦ ଥର ପକ୍ଷ ଚାଳନା କରୁଥାଏ, ଅର୍ଥାତ୍ କେବଳ ପକ୍ଷ-ଚାଳନାରେ ସେ ଅଧିକ ଶକ୍ତି ପ୍ରୟୋଗ କରିଥାଏ । ଏହି ପକ୍ଷୀ କେବଳ ତଳଉପର ନୁହେଁ, ବାମ ଦକ୍ଷିଣ ଓ ପଛପଟକୁ ମଧ୍ୟ ଉଡ଼ିପାରେ ।

# ଜେଜେବାପାଙ୍କର ପୁଣି ନୂଆ କୌତୁକ!

ଜେଜେବାପା ପାଖରେ ଥିଲେ ସମୟ କେବେ ନିରାନନ୍ଦରେ କଟେ ନାହିଁ । ସେ ଯଦି ଅନ୍ୟ କିଛି କାମରେ ବ୍ୟସ୍ତ ନ ଥାନ୍ତି, ତା'ହେଲେ ସେ ନିଜର ନାତିନାତୁଣୀଙ୍କ ପାଇଁ କୌଣସି ନୂଆ କୌତୁକ ଖୋଜୁଥାଆନ୍ତି । ଏବେ ପଅଁଷଠି ବର୍ଷରେ ବି ତାଙ୍କୁ ବିଶ୍ବର ସବୁଠାରୁ ଅଧିକ କର୍ମଠ ଜେଜେବାପା ବୋଲି କୁହାଯାଇପାରେ !

ଏହା ହର୍ଲିକ୍ସର ମହିମା ! ଏତେ ବର୍ଷ ଧରି ହର୍ଲିକ୍ସହିଁ ତାଙ୍କୁ ସୁସ୍ଥ ଓ କର୍ମଠ ରଖି ଆସିଛି ।

ଡାକ୍ତରଙ୍କ ମତରେ ହର୍ଲିକ୍ସ, ଅତ୍ୟନ୍ତ ପୁଷ୍ଟିକର ଓ ସହଜରେ ହଜମ ହୁଏ ।

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ—ଦିନକୁ ଦୁଇଥର ହର୍ଲିକ୍ସ ପିଇବା ହେଉଛି ତାଙ୍କର ନିତିଦିନିଆ ପ୍ରିୟ ଅଭ୍ୟାସ ।



୭୦ ବର୍ଷରୁ ଅଧିକ କାଳ ଧରି ଜେଜେବାପାଙ୍କ ପ୍ରିୟ ସ୍ୱାସ୍ଥ୍ୟକର ପାନୀୟ

ସହଜରେ ହଜମ ହେବା ଆକାରରେ ହର୍ଲିକ୍ସରେ ଭରି ରହିଛି ଏକାନ୍ତ ପ୍ରୟୋଜନୀୟ ପ୍ରାକୃତିକ ପୁଷ୍ଟିକର ଉପାଦାନ ପ୍ରୋଟିନ, ଭିଟାମିନ, ମିନେରାଲସ ଓ କାର୍ବୋହାଇଡ୍ରେଟ୍ ଯାହାକି ଶକ୍ତି, ସ୍ଫୁର୍ତ୍ତି ଏବଂ ସ୍ୱାସ୍ଥ୍ୟ ଯୋଗେଇଥାଏ ।

ଏଣୁ ସାରା ପୃଥିବୀର ଡାକ୍ତରମାନେ ଯେ ହର୍ଲିକ୍ସ ପିଇବାକୁ ପରାମର୍ଶ ଦିଅନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ, ଏହା ହେଲା ପୂରା ପରିବାର ପାଇଁ ପୁଷ୍ଟିସାଧନର ପ୍ରମାଣିତ ଉତ୍ସ ।







**ପୁଷ୍ଟି ଯୋଗାଇବାରେ ଅଦ୍ବିତୀୟ**

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ମାର୍ଚ୍ଚ ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



Mohan D. Desai

ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃଟି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜାନୁଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ନଭେମ୍ବର '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ମାନବ-ଜୀବନ ନୁହେଁ ଆନ କିଛି—ପାଣି ଫୋଟକା,

ଦ୍ୱିତୀୟ ଚିତ୍ର : ଦର୍ପଣର ଛବି; ନୁହେଁ ଚିରସ୍ଥାୟୀ ଜୀବନ ଏକା !

ପୁରସ୍କାର ବିଜୟୀ : ରମେଶ ଚନ୍ଦ୍ର ମଙ୍ଗରାଜ, ଖୋର୍ଦ୍ଧା

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

No share prices,
no political fortunes, yet...

# Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.

– from an IMRB sur[vey]
conducted in Oct. 1[...]




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?

## THE HERITAGE